PRUTHIVIRA SAPTASCHARYA
*by Dr. Gokulananda Mohapatra*
*Publishers : Vidyapuri, Cuttack 753002*

ISBN : 81-7411-081-X

ପ୍ରଥମ ପ୍ରକାଶ ଅଗଷ୍ଟ ୧୯୯୪

ପ୍ରକାଶକ

ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ

ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ ଟ ୨୦.୦୦

# ମୁଖବନ୍ଧ

ପୃଥିବୀରେ ସପ୍ତାଶ୍ଚର୍ଯ୍ୟ ମାତ୍ର ସାତଗୋଟି ନୁହେଁ । ଏହା ପ୍ରକୃତରେ ଆହୁରି ଅଧିକ-ସଂଖ୍ୟକ । ଏଗୁଡ଼ିକ ବିଭିନ୍ନ ସମୟରେ ପୃଥିବୀର ବିଭିନ୍ନ ଦେଶରେ ସୃଷ୍ଟ ହୋଇଥିବାରୁ ଏଗୁଡ଼ିକୁ ପ୍ରଧାନତଃ ଚାରିଭାଗରେ ବିଭକ୍ତ କରାଯାଇଛି । ସେହି ଚାରିଭାଗ ହେଲା : ପ୍ରାଚୀନଯୁଗ, ମଧ୍ୟଯୁଗ, ଆଧୁନିକଯୁଗ ଓ ପ୍ରକୃତି-କୃତ । ପ୍ରାଚୀନ ଯୁଗର ସପ୍ତାଶ୍ଚର୍ଯ୍ୟ ସବୁଠାରୁ ଅଧିକ ଖ୍ୟାତି ଲଭିଛି । ଦୁଃଖର ବିଷୟ, ପୁରାତନ ଯୁଗର ସେହି ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଗୋଟିକୁ ଛାଡ଼ିଦେଲେ ଅନ୍ୟଗୁଡ଼ିକ ନାହିଁ । ସେଗୁଡ଼ିକ ବହୁଦିନରୁ ଧ୍ୱଂସ ପାଇଗଲାଣି । ତେବେ ସେଗୁଡ଼ିକର କିଛି ସାକ୍ଷ୍ୟ ପୁରାକାଳର ପରିବ୍ରାଜକମାନଙ୍କ ବର୍ଣ୍ଣନାରୁ ଅଳ୍ପ-ବହୁତେ ଜଣାପଡ଼େ । କେତେକ ଯାଦୁଘରେ କେତେକଙ୍କ ଧ୍ୱଂସାବଶେଷ ପଡ଼ିରହିଛି । ବାକିତକ ମଧ୍ୟଯୁଗର, ଆଧୁନିକ ଯୁଗର ଓ ପ୍ରକୃତି-କୃତ ସପ୍ତାଶ୍ଚର୍ଯ୍ୟ ଆଜିପର୍ଯ୍ୟନ୍ତ ତିଷ୍ଠି ରହିଛି । ସେଗୁଡ଼ିକୁ ଦେଖି ସେ ଯୁଗର କାରୁକାର୍ଯ୍ୟ, ଚାରୁକଳା ଓ ଜ୍ଞାନଗରିମା କଥା ଜଣାପଡ଼େ ।

କଟକ — ଲେଖକ

ତା ୧୫।୮।୯୪

# ସୂଚୀ

# ପୁରାତନ ଯୁଗର ସପ୍ତାଶ୍ଚର୍ଯ୍ୟ

୧. **ମିଶରର ପିରାମିଡ୍**

ଏହା ବର୍ତ୍ତମାନ କାଇରୋ ନିକଟରେ ଅବସ୍ଥିତ ।

୨. **ବେବିଲୋନ୍‌ର ଦୋଳାୟମାନ ଉଦ୍ୟାନ**

ବର୍ତ୍ତମାନର ଇରାକ ଦେଶସ୍ଥିତ ଇଉଫ୍ରେଟିସ୍ ନଦୀର ଅଳ୍ପ ଦୂରରେ ନିର୍ମିତ ହୋଇଥିଲା ।

୩. **ଆଲେକ୍‌ଜାଣ୍ଡ୍ରିଆର ବତିଘର**

ଏହା ବର୍ତ୍ତମାନର ଆଲେକ୍‌ଜାଣ୍ଡ୍ରିଆ ବନ୍ଦର ନିକଟରେ ଅବସ୍ଥିତ ଥିଲା ।

୪. **ରୋଡ୍‌ସ୍ ଦ୍ୱୀପର ବିରାଟ ମୂର୍ତ୍ତି କଲୋସସ୍**

ଏହା ଭୂମଧ୍ୟସାଗର ଭିତରେ ଗ୍ରୀସ୍‌ର ଏକ ଦ୍ୱୀପ ।

୫. **ଏଫିସସ୍‌ର ଡାଏନା ଦେବୀଙ୍କ ମନ୍ଦିର**

ଏହି ମନ୍ଦିରଟି ବର୍ତ୍ତମାନର ତୁର୍କୀ ରାଜ୍ୟରେ ନିର୍ମିତ ହୋଇଥିଲା ।

୬. **ଅଲିମ୍ପିଆର ଜିଅସ୍**

ଏହା ଗ୍ରୀସ୍‌ର ଅଲିମ୍ପିକ୍ ସହରଠାରେ ପ୍ରତିଷ୍ଠିତ ।

୭. **ରାଜା ମସୋଲସଙ୍କ ସମାଧି-ମନ୍ଦିର**

ଏହା ମଧ୍ୟ ବର୍ତ୍ତମାନର ତୁର୍କୀର ବଡ଼ରମ୍ ବନ୍ଦରଠାରେ ପ୍ରତିଷ୍ଠିତ ହୋଇଥିଲା ।

# ମିଶରର ପିରାମିଡ୍

ପିରାମିଡ୍ ହେଉଛି ମିଶର ରାଜାମାନଙ୍କ ସମାଧି-ମନ୍ଦିର । କଥିତ ଅଛି, ରାଜାମାନେ ଯେଉଁଦିନରୁ ଜନ୍ମ ନିଅନ୍ତି, ସେହିଦିନଠାରୁ ସେମାନଙ୍କର ଏହି ସମାଧି-ମନ୍ଦିର ତିଆରି ଆରମ୍ଭ ହୁଏ । ଯେଉଁ ରାଜା ଯେତେ ଅଧିକ ଦିନ ବଞ୍ଚେ, ସେହି ଅନୁସାରେ ତାହା ସେତିକି ବଡ଼ ହୁଏ । ସେମାନେ ମରିଯିବା ପରେ ସେମାନଙ୍କ ମୃତ ଶରୀର ଧନ ରତ୍ନ ସହ ଏହି ପିରାମିଡ୍ ମଧ୍ୟରେ ରଖାଯାଇ ଏହାର ତିଆରି ଶେଷ କରାଯାଏ । ମିଶରର ରାଜାମାନେ ନିଜ ସମାଧି-ମନ୍ଦିର ପାଇଁ ଯେଉଁସବୁ ବନ୍ଦୋବସ୍ତ କରୁଥିଲେ, ପୃଥିବୀର ଅନ୍ୟ କୌଣସି ରାଜା ସେପରି କରିବାର ଦେଖାଯାଏନି ।

ପିରାମିଡ୍ ଏକ ବିରାଟ କାରୁକାର୍ଯ୍ୟ । ଏହି ପିରାମିଡ୍‌ର ଉଚ୍ଚତା ୪୫୧ ଫୁଟ ଓ ଏହା ୧୨ ଏକର ପରିମିତ ସ୍ଥାନ ଦଖଲ କରି ରହିଛି । ଏହାର ମୂଳ ବେଦୀର ଲମ୍ବ ୭୦୦ ଫୁଟ ଓ ଓସାର ୪୦୦ ଫୁଟରୁ କିଛି ଅଧିକ । ବିଭିନ୍ନ ସମାଧି ମନ୍ଦିର ଭଳି ପିରାମିଡ୍ ଫମ୍ପା ନୁହେଁ । ଏହା ଗୋଟାସାରା ନିଦା । ପଥର ଉପରେ ପଥର ଯୋଡ଼ା ହୋଇ ସମୁଦାୟ ପିରାମିଡ୍‌ଟି ତିଆରି ହୋଇଛି । ମିଶରର ବହୁ ପିରାମିଡ୍ କାଳର ସ୍ରୋତରେ ଭାଙ୍ଗିରୁଜି ନଷ୍ଟ ହୋଇଗଲାଣି । ଏବେ କେବଳ ଗୋଟିଏ ମାତ୍ର ପିରାମିଡ୍ ଇଜିପ୍ଟର ରାଜଧାନୀ କାଏରୋ ଠାରୁ ଅଳ୍ପ ଦୂରରେ ତିଷ୍ଠି ରହିଛି । ଏହା ନ ଭାଙ୍ଗି ସେମିତି ରହିଛି । ଏହା ହେଉଛି ଖୁଫୁ ବା ଚେଓପ୍‌ସଙ୍କ ପିରାମିଡ୍ । ଏହା ୬୬୦୦ ବର୍ଷ ତଳେ ତିଆରି ହୋଇଥିଲା । ଏଥିରେ ୨୩ ଲକ୍ଷ ବଡ଼ ବଡ଼ ପଥରଖଣ୍ଡ ଲାଗିଥିଲା । ଯାହାର ଗୋଟିଏ ଗୋଟିଏ ପଥରର ଓଜନ ଅଢ଼େଇ ଟନ୍‌ରୁ ତିନି ଟନ୍ ଭିତରେ । ଏହି ପିରାମିଡ୍‌ଟିକୁ ତିଆରି କରିବା ପାଇଁ ଲକ୍ଷେ ଶ୍ରମିକଙ୍କୁ ୨୦ ବର୍ଷ ସମୟ ଲାଗିଥିଲା । ଏହାର ବାହାର ପାଖ ଧଳା ଚୂନପ୍ରସ୍ତର ଦ୍ୱାରା ଆଚ୍ଛାଦିତ ।



ମିଶରର ପିରାମିଡ୍

ଅତି ପୁରାତନ ଯୁଗରେ ଏତେ ବଡ଼ ବଡ଼ ପଥର କେମିତି ଏତେ ଉଚ୍ଚ ସ୍ଥାନକୁ ଉଠାଇ ନେଇ ପିରାମିଡ୍ ତିଆରି କରୁଥିଲେ, ତାହା ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗିଥାଏ । ପିରାମିଡ୍ ଚାରିପାଖରେ ଚକ୍ରାକାର ରୀତିରେ ରାସ୍ତା ତିଆରି କରି ଶ୍ରମିକମାନେ ସେହି ଅଳ୍ପ ଢାଲୁ ରାସ୍ତାରେ ପଥରକୁ ଟାଣି

ଟାଣି ଉପରକୁ ନିଅନ୍ତି ଓ ଉପରଆଡୁ ଆଗ ଶେଷ କରି ଆସନ୍ତି । ପିରାମିଡ୍‌ର ମଧ୍ୟଭାଗରେ ରାଜାଙ୍କ ମୃତ ଶରୀର ରଖିବା ପାଇଁ ଏକ ଛୋଟିଆ ଘର ତିଆରି ହୋଇଥାଏ । ସେହି ଘରକୁ ଯିବା ପାଇଁ ରାସ୍ତା ଏପରି ତିଆରି ହୋଇଥାଏ ଯେ, ଚୋର ଡକାୟତମାନେ ସହଜରେ ତା ଭିତରକୁ ଯାଇପାରନ୍ତି ନାହିଁ । ରାଜା ମରିଗଲା ପରେ ତାଙ୍କ ମୃତଦେହକୁ ଏକ ମମିରେ ପରିଣତ କରାଯାଇ ସେହି ମମିକୁ କାଠ-ବାକ୍ସ ବା ପଥର-ବାକ୍ସରେ ଭର୍ତ୍ତିକରି ସେହି ଛୋଟ ଘରଟିରେ ରଖାଯାଏ । ଖାଦ୍ୟପଦାର୍ଥ, ଲୁଗାପଟା ମଧ୍ୟ ଦିଆଯାଇଥାଏ । ଏହି ମମିକୁ ସେହି ଘର ଭିତରେ ଥୋଇ ଘରର ଦୁଆରକୁ ସବୁଦିନ ପାଇଁ ବନ୍ଦ କରି ଦିଆଯାଏ । ତତ୍‌ପରେ ସେହି ଅଙ୍କାବଙ୍କା ଅଣଓସାରିଆ ରାସ୍ତା ଦେଇ ପିରାମିଡ୍‌ରୁ ବାହାରି ଆସି ପିରାମିଡ୍‌ର ସେହି ଦ୍ୱାରକୁ ଅତି ଯତ୍ନ ସହକାରେ ବନ୍ଦକରି ଦିଆଯାଏ । ଏହାର ଗୁପ୍ତଦ୍ୱାର କେଉଁଠି ଅଛି, ବାହାରକୁ ମୋଟେ ଜଣାପଡ଼େ ନାହିଁ । ତଥାପି ପିରାମିଡ୍ ତିଆରିବେଳେ ଚୋର ଡକାୟତମାନେ ଏହା ଭିତରକୁ ଯିବାକୁ ଫାଙ୍କ ବାଟର ଖବର ରଖିଥାନ୍ତି । ସୁବିଧା ଦେଖି ଦୁଆର ଖୋଲି ଧନରତ୍ନ ସବୁ ଚୋରିକରି ନିଅନ୍ତି ।

ପୃଥିବୀର ଅତୀତ ଯୁଗର ସାତଗୋଟି ଆଶ୍ଚର୍ଯ୍ୟ ଭିତରୁ ଏହି ଗୋଟିକ ହିଁ ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି । ଏହି ବିଶାଳକାୟ ପିରାମିଡ୍‌କୁ ଦେଖିଲେ ଯେ' କେହି ଲୋକ ଆଶ୍ଚର୍ଯ୍ୟ ହୋଇଯିବ । ତା ପକ୍ଷରେ ଏହାକୁ ପୃଥିବୀର ସପ୍ତାଶ୍ଚର୍ଯ୍ୟ କହିବା ଛଡ଼ା ଅନ୍ୟ ଉପାୟ ନ ଥିବ ।

# ବେବିଲୋନ୍‌ର ଦୋଳାୟମାନ ଉଦ୍ୟାନ

ଖ୍ରୀଷ୍ଟ ଜନ୍ମ ହେବାର ଛଅଶହ ବର୍ଷ ପୂର୍ବର କଥା । ସେତେବେଳେ ବେବିଲୋନ୍‌ରେ ନବୋପାଲାସର ନାମରେ ଜଣେ ସମ୍ରାଟ୍ ଥିଲେ । ସେ ଆଉ ଏକ ଦୁର୍ଦ୍ଧର୍ଷ ଜାତି ମେଡ଼ିସ୍‌ମାନଙ୍କ ସହ ମିଳିତ ହୋଇ ପ୍ରବଳ ପ୍ରତାପୀ ଏସିରୀୟମାନଙ୍କୁ ପରାଜିତ କରି ସେମାନଙ୍କ ସାମ୍ରାଜ୍ୟକୁ ଧ୍ୱସ୍ତବିଧ୍ୱସ୍ତ କରି ପକାଇଥିଲେ । ତାଙ୍କ ପରେ ତାଙ୍କ ପୁଅ ନେବୁଚାଦ୍‌ନେଜ୍ଜର ବେବିଲୋନ୍‌ର ସମ୍ରାଟ୍ ହେଲେ । ସେ ମେଡ଼ିସ୍ ରାଜାଙ୍କ ଝିଅକୁ ବିବାହ କରିଥିଲେ । କିନ୍ତୁ ତାଙ୍କ ସ୍ତ୍ରୀ ଏକ ବନ୍ୟପାହାଡ଼ ରାଜ୍ୟରୁ ଆସିଥିବାରୁ ସେ ସର୍ବଦା ସେହିଭଳି ପ୍ରାକୃତିକ ପରିବେଶରେ ରହିବାକୁ ଭଲ ପାଉଥିଲେ । କିନ୍ତୁ ବେବିଲୋନ୍ ଏକ ସମତଳ ସ୍ଥାନ ହୋଇଥିବାରୁ ତାଙ୍କୁ ଏହି ଖୋଲା ଜାଗା ବିଶେଷ ଭଲ ଲାଗୁ ନ ଥିଲା ।

ସମ୍ରାଟ ନେବୁଚାଦ୍‌ନେଜ୍ଜର ଯେତେବେଳେ ଏହି କଥା ଜାଣିଲେ ସେ ନିଜ ପ୍ରାସାଦ ଉପରେ ରାଣୀଙ୍କ ମନୋରଞ୍ଜନ ପାଇଁ ଏକ ସୁନ୍ଦର ଉଦ୍ୟାନ ତିଆରି କଲେ । ନିଜ ପ୍ରାସାଦର ଛାତରେ ସେ ଏମିତି ଭାବରେ ଏକ ଉଦ୍ୟାନ କଲେ, ଯାହାକି ଏକ ପର୍ବତ ଉପରେ ବଣ ଭଳି ଦେଖାଯାଉଥିଲା । ଏହି ଉଦ୍ୟାନ ଗୋଟିଏ ଛାତରେ ନ ରହି ପ୍ରାସାଦର ବିଭିନ୍ନ ଛାତରେ ଥିଲା । ପ୍ରତ୍ୟେକ ଛାତ' ୧୦ ଫୁଟ ଚଉଡ଼ା ପାହାଚ ଦ୍ୱାରା ସଂଯୁକ୍ତ ହୋଇଥିଲା । ଉଦ୍ୟାନଭରା ଏହି ବହୁତଳ ପ୍ରାସାଦର ଉଚ୍ଚତା ଥିଲା ସାଢ଼େ ତିନିଶହ ଫୁଟ ପାଖାପାଖି । ପ୍ରାସାଦଟି ଦୂରରୁ ଏକ ବୃକ୍ଷରାଜି ଆଚ୍ଛାଦିତ ପର୍ବତ ଭଳି ଦିଶୁଥିଲା । ଏହି ଉଦ୍ୟାନ ଚାରିପାଖରେ ଯେଉଁ କାନ୍ଥ ଥିଲା, ତାର ମୋଟେଇ ବାଇଶି ଫୁଟ ପାଖାପାଖି ଥିଲା । ଭୃତ୍ୟମାନଙ୍କ ଦ୍ୱାରା ଚାଳିତ ପମ୍ପ୍ ସାହାଯ୍ୟରେ ନିକଟବର୍ତ୍ତୀ ନଦୀରୁ ଜଳ ସବା ଉପର ମହଲାରେ ଥିବା ଉଦ୍ୟାନକୁ ଉଠାଯାଉଥିଲା । ସେଠାରୁ ଝରଣା ଆକାରରେ ସବୁ ମହଲାର ଉଦ୍ୟାନଗୁଡ଼ିକୁ ଜଳ ଯୋଗାହେଉଥିଲା । ସ୍ତର ସ୍ତର ହୋଇ ବିଭିନ୍ନ ମହଲାର ଛାତରେ ଥିବା ଏହି ଉଦ୍ୟାନଗୁଡ଼ିକୁ ଦୋଳାୟମାନ ଉଦ୍ୟାନ କୁହାଯାଉଥିଲା । ଏହି ଉଦ୍ୟାନଟି ତାଙ୍କ ନିଜ ରାଜମହଲକୁ ଲାଗି ତିଆରି କରାଯାଇଥିଲା ।



ବେବିଲୋନ୍‌ର ଦୋଳାୟମାନ ଉଦ୍ୟାନ

ଗ୍ରୀକ୍ ପରିବ୍ରାଜକମାନେ ଯେତେବେଳେ ବେବିଲୋନ୍ ଭ୍ରମଣରେ ଆସିଥିଲେ, ସେମାନେ ଏହି ଦୋଳାୟମାନ ଉଦ୍ୟାନ ଦେଖି ଏହାର ଭୂରି ଭୂରି ପ୍ରଶଂସା କରି ଏହାକୁ ପୃଥିବୀର ସାତଗୋଟି ମହାଶ୍ଚର୍ଯ୍ୟ ଭିତରୁ ଗୋଟିଏ ବୋଲି ସ୍ୱୀକାର କରି ଯାଇଥିଲେ । ଏହି ଉଦ୍ୟାନ ବେଶୀଦିନ ତିଷ୍ଠିପାରି ନ ଥିଲା । ରାଣୀଙ୍କ ମୃତ୍ୟୁ ପରେ ବେବିଲୋନ୍ ପାରସ୍ୟମାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ଦିନକୁ ଦିନ ତତ୍ତ୍ୱାବଧାନ ଅଭାବରୁ ଦୋଳାୟମାନ ଉଦ୍ୟାନଟି ଧୀରେ ଧୀରେ ଭାଙ୍ଗିପଡ଼ିଲା । ବର୍ତ୍ତମାନ ସେ ଉଦ୍ୟାନ ଆଉ ନାହିଁ । କେବଳ ଏହାର କେତେଗୋଟି ଖମ୍ବ, କାନ୍ଥ, ଖିଲାଣ ଏବେ ବି ଭଙ୍ଗା ଅବସ୍ଥାରେ ସେହି ସ୍ଥାନରେ ପଡ଼ିରହିଛି । ଦୋଳାୟମାନ ଉଦ୍ୟାନର ତାହାହିଁ ହେଉଛି ଏକମାତ୍ର ସାକ୍ଷୀ । ବର୍ତ୍ତମାନର ଇରାକ ହେଉଛି ସେ କାଳର ବେବିଲୋନ୍ ରାଜ୍ୟ । ଏବେ ବି ସେଇ ଇଉଫ୍ରେଟିସ୍ ନଦୀ ଇରାକ ରାଜ୍ୟରେ ବହିଯାଉଛି ।

# ଆଲେକ୍‌ଜାଣ୍ଡ୍ରିଆର ବତିଘର

ଆଲେକ୍‌ଜାଣ୍ଡ୍ରିଆ ହେଉଛି ପୁରାତନ ମିଶରର ଏକ ବନ୍ଦର । ଏହା ଭୂମଧ୍ୟସାଗର ଉପକୂଳରେ ଅବସ୍ଥିତ । ଏହାକୁ ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର ମିଶର ଜୟ କରିବାବେଳେ ପ୍ରତିଷ୍ଠା କରିଥିଲେ । ସେଥିପାଇଁ ଏହା ତାଙ୍କରି ନାମାନୁସାରେ ଆଲେକ୍‌ଜାଣ୍ଡ୍ରିଆ ହୋଇଥିଲା । ଆଲେକ୍‌ଜାଣ୍ଡ୍ରିଆ ଏବେ ବି ମିଶର ବା ଆଧୁନିକ ଇଜିପ୍ଟର ଏକ ବନ୍ଦର ଭାବରେ ରହିଛି । ଏହା ନୀଳନଦୀର ମୁହାଣରେ ଅବସ୍ଥିତ ।

ପୁରାକାଳରେ ଏଠାରେ ଗୋଟିଏ ଅତି ପ୍ରସିଦ୍ଧ ବତିଘର ଥିଲା । ଏହି ବତିଘରର ଆଲୋକକୁ ଆଲେକ୍‌ଜାଣ୍ଡ୍ରିଆ ଠାରୁ ୪୩ କିଲୋମିଟର ଦୂରରେ ସମୁଦ୍ରରେ ଆସୁଥିବା ନାବିକମାନେ ଅନ୍ଧକାର ରାତ୍ରିରେ ଦେଖିପାରି ଭୂମଧ୍ୟସାଗରରେ ସେମାନଙ୍କ ଅବସ୍ଥିତି ଜାଣିପାରୁଥିଲେ । ଏହି ବତିଘରଟିର ଅନ୍ୟ ନାମ ହେଉଛି ଫାରୋଜ୍ । ବହୁ ଇଉରୋପୀୟ ଭାଷାରେ ଫାରୋଜ୍ କହିଲେ ବତିଘରକୁ ବୁଝାଏ । ଏହି ବତିଘରର ସବା ଉପରେ ଗୋଟିଏ ଅତି ବିରାଟ ଦର୍ପଣ ଥିଲା । କିମ୍ବଦନ୍ତୀ କହେ, ଏହି ଦର୍ପଣ ଏଡ଼େ ବିରାଟ ଥିଲା ଯେ, ଏଥିରେ ଜଣେ ଲୋକ ବହୁ ଦୂରବର୍ତ୍ତୀ କନ୍‌ଷ୍ଟାଣ୍ଟିନୋପଲ୍ ସହରର ରାସ୍ତାଘାଟ, ଯାନବାହନ ଓ ଲୋକମାନଙ୍କୁ ଦେଖିପାରୁଥିଲା । ଏହି ଦର୍ପଣ ପୁଣି ଏମିତି ଯେ, ଏହାଦ୍ୱାରା ସୂର୍ଯ୍ୟକିରଣକୁ କେନ୍ଦ୍ରୀଭୂତ କରି ବନ୍ଦରଠାରୁ ୧୬୦ ମାଇଲ ଦୂରରେ ଆସୁଥିବା ନୌକାକୁ ପୋଡ଼ିଜାଳି ପାଉଁଶ କରିଦିଆଯାଉଥିଲା । ଏହା ଖ୍ରୀଷ୍ଟ ଜନ୍ମହେବାର ଦୁଇଶହ ବର୍ଷ ପୂର୍ବରୁ ଆଲେକ୍‌ଜାଣ୍ଡ୍ରିଆରେ ପ୍ରତିଷ୍ଠିତ ହୋଇଥିଲା । ଏହା ଧଳା ମାର୍ବଲ ପଥରରେ ତିଆରି । ଏହି ସ୍ତମ୍ଭଟି ଆଠତାଲାଯୁକ୍ତ । ଉପର ତାଲାଟି ସର୍ବଦା ତଳତାଲାଠାରୁ ଛୋଟ । ଅଷ୍ଟମ ତାଲାରେ ସର୍ବଦା ନିଆଁ ଜଳାଯାଇ ଦୂରସ୍ଥାନକୁ ଆଲୋକ ପ୍ରଦାନ କରାହେଉଥିଲା । ଏହା ହିଁ ହେଉଛି ପୃଥିବୀର ସର୍ବପ୍ରଥମ ବତିଘର । ଏହାରି ଅନୁକରଣରେ ପୃଥିବୀର ବିଭିନ୍ନ ସମୁଦ୍ର ଉପକୂଳରେ ବତିଘରମାନ ସ୍ଥାପନା କରାଯାଇଛି ।



ଆଲେକ୍‌ଜାଣ୍ଡ୍ରିଆର ବତିଘର

ଯେତେବେଳେ ଆରବୀୟମାନେ ମିଶର ଆକ୍ରମଣ କଲେ, ସେତେବେଳେ ଏହି ବତିଘର ମୁସଲମାନମାନଙ୍କ ଜାହାଜକୁ ଆଲୋକ ଦେଖାଇ ବାଟ ବତାଉଥିଲା । ଏହା ଦେଖି କନ୍‌ଷ୍ଟାଣ୍ଟିନୋପଲର ଖ୍ରୀଷ୍ଟାନ୍ ସମ୍ରାଟ୍ ଏହି ବତିଘରକୁ ଧ୍ୱଂସ କରିଦେବାକୁ ଚାହିଁଲେ । ସେଥିପାଇଁ ସେ ଏକ ଅପୂର୍ବ

ଯୋଜନା ତିଆରି କଲେ, ଯାହା ଫଳରେ ଏହି ବତିଘର ଧ୍ୱଂସ ପାଇଗଲା । ସେ ଜଣେ ଗୁପ୍ତଚରକୁ ଆଲେକ୍‌ଜାଣ୍ଡ୍ରିଆ ପଠାଇଲେ । ସେ ସେଠାକାର ଶାସକ କାଲିଫ୍ ଏଲ୍ ୱାଲିଦ୍‌ଙ୍କୁ କହିଲେ ଯେ, ତାଙ୍କ ପୂର୍ବପୁରୁଷମାନେ ଏହି ବତିଘର ତଳେ ବହୁତ ଧନରତ୍ନ ପୋତି ଯାଇଛନ୍ତି । ଶାସକ ଏହି ଗୁପ୍ତଚରର କଥାକୁ ବିଶ୍ୱାସ କରି ଏହାକୁ ଖୋଳିବାକୁ ଆରମ୍ଭ କଲେ । ସେଥିପାଇଁ ସେ ଏହି ବତିଘରର ପଥର ଗୋଟିକ ପରେ ଗୋଟିଏ କାଢ଼ି ତଳକୁ ଖସାଇ ବତିଘର ଭାଙ୍ଗିବାକୁ ଆରମ୍ଭ କଲେ । ସେ ବତିଘରଟିକୁ ଅଧା ଭାଙ୍ଗିଲାବେଳକୁ ଜାଣିବାକୁ ପାଇଲେ ଯେ, ଗୁପ୍ତଚରଟି ତାଙ୍କୁ ମିଛରେ ଏପରି କହି ଠକିଦେଇଛି । ସେ ନିଜର ଭୁଲ୍ ବୁଝିପାରି ପୁଣି ଥରେ ପଥରଗୁଡ଼ିକୁ ବସାଇ ବତିଘରଟିକୁ ତିଆରି କରିବାକୁ ବସିଲେ । କିନ୍ତୁ ତାଙ୍କ ଲୋକେ ଠିକ୍ ଭାବରେ ସେହି ପଥରଗୁଡ଼ିକୁ ଆଉ ବସାଇ ପାରିଲେନି । ଏହି ସମୟରେ ବତିଘରର ସବା ଉପରେ ଥିବା ଦର୍ପଣଟି ତଳକୁ ଖସିପଡ଼ି ଭାଙ୍ଗି ଚୁର୍‌ମାର ହୋଇଗଲା ।

୧୩୭୫ ଖ୍ରୀଷ୍ଟାବ୍ଦରେ ଆଲେକ୍‌ଜାଣ୍ଡ୍ରିଆରେ ଏକ ବଡ଼ ଭୂମିକମ୍ପ ହେଲା । ତଦ୍ୱାରା ବତିଘରର ଯାହାକିଛି ବାକି ଅଂଶ ଥିଲା, ସବୁ ଖସିପଡ଼ିଲା ସମୁଦ୍ର ଜଳ ଭିତରେ । ଆଉ ବତିଘରର କିଛି ଚିହ୍ନବର୍ଣ୍ଣ ରହିଲାନି । ତେବେ ନିକଟସ୍ଥ ସମୁଦ୍ର ତଳେ ପଡ଼ିଥିବା ବତିଘରର ଏହି ଭଗ୍ନାବଶେଷ ଦେଖି ଏଠାରେ ଏକ ବିରାଟ ବତିଘର ଥିବାର ଅନୁମାନ କରାଯାଏ ।

# ରୋଡ଼ସ୍ ଦ୍ୱୀପର ବିରାଟ ମୂର୍ତ୍ତି କଲୋସସ୍

ରୋଡ଼ସ୍ ଦ୍ୱୀପ ଗ୍ରୀସ୍ ରାଜ୍ୟର ଅନ୍ତର୍ଗତ । ଏହା ଭୂମଧ୍ୟସାଗର ଭିତରେ ଏକ ଦ୍ୱୀପ । ଗ୍ରୀସ୍ କେତେଗୁଡ଼ିଏ ଦ୍ୱୀପକୁ ନେଇ ଗଠିତ । ସେଥିଭିତରୁ ରୋଡ଼ସ୍ ଗୋଟିଏ । ଏହା ପୁରାକାଳରେ ଏକ ପ୍ରସିଦ୍ଧ ବନ୍ଦର ଥିଲା । ଏବେ ମଧ୍ୟ ଅଛି, କିନ୍ତୁ ସେ କାଳର ପ୍ରାଧାନ୍ୟ ନାହିଁ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରୋମାନ୍ ଐତିହାସିକ ପ୍ଲିନି, କଲୋସସ୍‌କୁ ଭଙ୍ଗା ଅବସ୍ଥାରେ ଦେଖିଥିଲେ । ସେ ଯେଉଁ ଭଙ୍ଗା ମୂର୍ତ୍ତି ଦେଖିଥିଲେ, ତାହା ମଧ୍ୟ ଖୁବ୍ ବିରାଟ ଥିଲା । ଏକ ଭୂମିକମ୍ପ ଯୋଗୁ ଏହା ଭାଙ୍ଗିଯାଇଥିଲା ।

କଲୋସସ୍ ମୂର୍ତ୍ତିଟି ବ୍ରୋଞ୍ଜରେ ତିଆରି । ଏହାକୁ ଯେଉଁ କାରିଗର ତିଆରି କରିଥିଲେ, ତାଙ୍କ ନାଁ ହେଉଛି କେରେସ୍ ଅଫ୍ ଲିଣ୍ଡସ୍ । ଏହା ଖ୍ରୀ:ପୂ: ୨୯୨ ମସିହାରେ ଆରମ୍ଭ ହୋଇ ଖ୍ରୀ:ପୂ: ୨୮୦ରେ ଶେଷ ହୋଇଥିଲା । ଏହାକୁ ତିଆରି କରିବା ପାଇଁ ୧୨ବର୍ଷ ସମୟ ଲାଗିଥିଲା । ଏହା ଏକ ଯୁଦ୍ଧର ପୁରସ୍କାର ସ୍ୱରୂପ ତିଆରି ହୋଇଥିଲା ।

ଖ୍ରୀ:ପୂ: ୩୧୨ ମସିହାରେ ଟଲେମୀ ମିଶରର ରାଜା ଥିଲେ । ସେ ଏଣ୍ଟିଗୋନସ୍ ନାମକ ମେସିଡୋନ୍‌ର ରାଜାଙ୍କ ସହିତ ଯୁଦ୍ଧ କରୁଥିଲେ । ରୋଡ଼ସ୍ ଦ୍ୱୀପର ଲୋକମାନେ ଠିକ୍ କଲେ, ସେମାନେ ଟଲେମୀଙ୍କ ସପକ୍ଷରେ ଲଢ଼ିବେ । ସେମାନେ ଲଢ଼ି ଏଣ୍ଟିଗୋନସ୍‌ଙ୍କୁ ପରାସ୍ତ କଲେ । ଏହାର ପାଞ୍ଚବର୍ଷ ପରେ ମେସିଡୋନିଆ ରାଜ୍ୟର ଲୋକମାନେ ଏହାର ପ୍ରତିଶୋଧ ନେବାକୁ ମନସ୍ଥ କଲେ । ସେମାନେ ରୋଡ଼ସ୍ ଦ୍ୱୀପର ଲୋକଙ୍କୁ ପରାଜିତ କରିବା ପାଇଁ ସୈନ୍ୟସାମନ୍ତ ପଠାଇଲେ । ବାରମାସ ଧରି ଯୁଦ୍ଧ କରି ସେମାନେ ରୋଡ଼ସ୍ ଦ୍ୱୀପକୁ ନିଜ ଅକ୍ତିଆରକୁ ନେଇ ପାରିଲେନି । ଏହି ସମୟରେ ଟଲେମୀଙ୍କ ସୈନ୍ୟମାନେ ଆସି ରୋଡ଼ସ୍‌ବାସୀଙ୍କ ସହିତ ମିଳିତ ହୋଇ ଯୁଦ୍ଧ ଚଳାଇ ମେସିଡୋନିଆନ୍‌ମାନଙ୍କୁ ପରାସ୍ତ କଲେ ।

ଏହି ଯୁଦ୍ଧରେ ନିଜର ବିଜୟ ହେତୁ ଖୁସି ହୋଇ ରୋଡ଼ସ୍‌ର ଅଧିବାସୀମାନେ କାରିଗର କେରେସ୍‌ଙ୍କୁ ଡକାଇଲେ । ସେ ମଧ୍ୟ ରୋଡ଼ସ୍‌ର ସ୍ୱାଧୀନତା ବଜାୟ ରଖିବା ପାଇଁ ନିଜେ ଯୁଦ୍ଧରେ ଯୋଗ ଦେଇଥିଲେ । ତେଣୁ ଏହି ଯୁଦ୍ଧର ବିଜୟ ପାଇଁ ଏକ ସ୍ମୃତି ପ୍ରତିଷ୍ଠା କରିବା ପାଇଁ ତାଙ୍କୁ



ରୋଡ଼ସ୍ ଦ୍ୱୀପର ବିରାଟ ମୂର୍ତ୍ତି କଲୋସସ୍

କୁହାଗଲା । ସେ ଭଗବାନ ସୂର୍ଯ୍ୟଙ୍କର ଏକ ମୂର୍ତ୍ତି ସେହି ବନ୍ଦରର ମୁଖ୍ୟ ସ୍ଥାନରେ ତିଆରି କରିବା ପାଇଁ ପ୍ରସ୍ତାବ ଦେଲେ । ମେସିଡୋନିୟାନ୍‌ମାନେ ଯେଉଁସବୁ ଯୁଦ୍ଧ ସରଞ୍ଜାମ ଓ ଜାହାଜ ଆଦି ଛାଡ଼ି ପଳାଇଥିଲେ, ସେ ସବୁକୁ ତରଳାଇ ସେଥିରୁ ଏହି ମୂର୍ତ୍ତିଟି ପୂରାପୂରି ତିଆରି କରିବାପାଇଁ ଠିକ୍ କଲେ । ଏହି ଯେଉଁ ମୂର୍ତ୍ତିଟି ହେଲା ତାହା ଖୁବ୍ ବିରାଟ ହୋଇଥିଲା । ବନ୍ଦରର ଦ୍ୱାରଦେଶରେ ଏହି ମୂର୍ତ୍ତିଟି ଦଣ୍ଡାୟମାନ ଅବସ୍ଥାରେ ତିଆରି ହୋଇଥିଲା । ଏହି ମୂର୍ତ୍ତିଟି ବେଶୀଦିନ ରହି ପାରିଲାନି । ଏହା ତିଆରି ହେବାର ୫୬ ବର୍ଷ ପରେ ଏକ ଭୂମିକମ୍ପ ଫଳରେ ଏହି ଧାତବ ମୂର୍ତ୍ତିଟି ଭାଙ୍ଗିପଡ଼ିଲା । ଏହା ସେତେବେଳେ ପୃଥିବୀର ସପ୍ତାଶ୍ଚର୍ଯ୍ୟ ଭିତରୁ ଗୋଟିଏ ବୋଲି ପ୍ରସିଦ୍ଧି ଲାଭ କରିଥିଲା ।

ଖ୍ରୀଷ୍ଟାବ୍ଦ ୬୭୨ରେ ଆରବୀୟମାନେ ଯୁଦ୍ଧକରି ରୋଡ୍‌ସ୍ ଦଖଲ କଲେ । ସେମାନେ ଏହାକୁ ଅଧିକାର କରିବାକ୍ଷଣି ଭଙ୍ଗା ମୂର୍ତ୍ତିଟିକୁ ଏକ ଇହୁଦୀ ବଣିକକୁ ବିକ୍ରୟ କରିଦେଲେ । ଏହି ବଣିକଟି ୯୦୦ ଓଟ ପିଠିରେ ଲଦି ଏହି ବ୍ରୋଞ୍ଜକୁ ନେଇଗଲେ । ଭାଙ୍ଗିଯିବା ପରେ ସେଥିରୁ ଯେଉଁ କେତେକ ବ୍ରୋଞ୍ଜ ମିଳିଥିଲା, ତାର ଓଜନ ଥିଲା ୩୦୦ ଟନ୍ । ସେଗୁଡ଼ିକୁ ଇହୁଦୀ ବଣିକଟି ନେଇ[illegible] । ଏହିଭଳି ଭାବରେ ପୃଥିବୀର ଏକ ସପ୍ତାଶ୍ଚର୍ଯ୍ୟ ପୃଥିବୀପୃଷ୍ଠରୁ ଲୋପ ପାଇଗଲା । ଏବେ ସେହି ରୋଡ୍‌ସ୍ ବନ୍ଦରରେ କଲୋସସ୍‌ର ସେହି ଲୁପ୍ତ ମୂର୍ତ୍ତିଟିର ସ୍ମାରକୀ ପାଇଁ ସେଠାରେ ବର୍ତ୍ତମାନ ଏକ ସ୍ମୃତିସ୍ତମ୍ଭ ଠିଆ ହୋଇଛି ।

# ଏଫିସସ୍‌ର ଡାଏନା ଦେବୀଙ୍କ ମନ୍ଦିର

ବହୁ ପୁରାକାଳରେ ଜଣେ ଲେଖକ ଲେଖିଥିଲେ, ''ମୁଁ ବେବିଲୋନ୍‌ର ଦୋଳାୟମାନ ଉଦ୍ୟାନ ଦେଖିଛି, ଅଲିମ୍ପିଆଠାରେ ଜିଅସ୍‌ଙ୍କ ମନ୍ଦିର ଦେଖିଛି, ରୋଡ୍‌ସ୍‌ର ବିରାଟ ବ୍ରୋଞ୍ଜମୂର୍ତ୍ତି ଦେଖିଛି, ମିଶରର ଉଚ୍ଚା ଉଚ୍ଚା ପିରାମିଡ୍ ଦେଖିଛି, ମସୋଲସ୍‌ଙ୍କ ସ୍ମୃତି-ମନ୍ଦିର ଦେଖିଛି, କିନ୍ତୁ ମୁଁ ଯେତେବେଳେ ଡାଏନା ଦେବୀଙ୍କ ମନ୍ଦିର ଦେଖିଲି, ମୋତେ ଏହା ଏତେ ଆଶ୍ଚର୍ଯ୍ୟାନ୍ୱିତ କଲା ଯେ, ମୁଁ ଏହାର ବିରାଟତାରେ ସ୍ତବ୍ଧ ହୋଇ ଅନ୍ୟଗୁଡ଼ିକର ବିରାଟତାକୁ ନ୍ୟୁନ ମଣିଲି ।'' ଏହି ମନ୍ଦିରର ଖମ୍ବ ଉଚ୍ଚତାରେ ମେଘକୁ ଛୁଇଁଲା ଭଳି ମନେ ହେଉଥିଲା । ଆଉ ଜଣେ ଲେଖକ କହନ୍ତି, ମଣିଷ ଯେତେ ବଡ଼ ବଡ଼ ମନ୍ଦିର ତିଆରି କରିଛି, ଏହା ହେଉଛି ସବୁଠାରୁ ବିଶାଳକାୟ ମନ୍ଦିର ।

ଆଜିକାଲି ଆମେ ଯାହାକୁ ତୁର୍କୀ କହୁଛୁ, ପୁରାତନ ଯୁଗରେ ସେହି ରାଜ୍ୟରେ ଆଉ ଏକ ନଗରୀ ଥିଲା । ତାହାର ନାମ ହେଉଛି 'ଏଫିସସ୍' । ଏଠାରେ ସେହି ନଗରୀର ଅଧିବାସୀମାନେ ଗୋଟିଏ ମନ୍ଦିର ତୋଳାଇବାକୁ ଚେଷ୍ଟା କରି ବିଫଳ ହୋଇଥିଲେ । ଖ୍ରୀ:ପୂ: ୭୦୦ ମସିହାରେ ସେମାନେ ପ୍ରଥମେ ଚେଷ୍ଟା କରିଥିଲେ । ପାଞ୍ଚଥର ଅକୃତକାର୍ଯ୍ୟ ହେବା ପରେ ଖ୍ରୀ:ପୂ: ୩୨୩ ମସିହାରେ ଏହି ମନ୍ଦିର ପ୍ରତିଷ୍ଠାରେ ସେମାନେ କୃତକାର୍ଯ୍ୟ ହେଲେ । ପ୍ରତିଥର ମନ୍ଦିର ପୋଡ଼ିଦିଆଯାଉଥିବାରୁ ଏହି ଅବସ୍ଥା ସୃଷ୍ଟି ହୋଇଥିଲା । ଶେଷଥର ପାଇଁ ଯେଉଁ ମନ୍ଦିର ତିଆରି ହେଲା, ସେହି ମନ୍ଦିର ତିଆରି ପାଇଁ ଏଫିସସ୍ ନଗରୀର ନାରୀମାନେ ସେମାନଙ୍କ ସ୍ୱର୍ଣ୍ଣ ଅଳଙ୍କାର ବିକି ମନ୍ଦିର ପାଇଁ ଅର୍ଥ ସଂଗ୍ରହ କରିଥିଲେ । ଏସିଆ ମାଇନର ରାଜ୍ୟର ରାଜା ଏହାର ଉଚ୍ଚତମ ସ୍ତମ୍ଭଗୁଡ଼ିକ ତିଆରି କରି ଦେଇଥିଲେ । ପ୍ରବଳପ୍ରତାପୀ ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡର ମଧ ଗୋଟିଏ ପ୍ରସ୍ତାବ ଦେଇଥିଲେ ଯେ ଯଦି ସେହି ମନ୍ଦିରରେ ତାଙ୍କ ନାମ ଏକ ପ୍ରଭାବଶାଳୀ ଶାସକ ବୋଲି ଉଲ୍ଲେଖ କରାଯାଏ, ତେବେ ସେ ସମସ୍ତ ଖର୍ଚ୍ଚ ବହନ କରି ଏହି ମନ୍ଦିର ତିଆରି କରିଦେବେ । କିନ୍ତୁ ସେହି



ଡାଏନା ଦେବୀଙ୍କ ମନ୍ଦିର

ନଗରୀର ଅଧିବାସୀମାନେ ଏହାକୁ ପ୍ରତ୍ୟାଖାନ କରିଦେଇଥିଲେ । ଏସିଆ ମାଇନରର ଲିଡ଼ିୟା ରାଜ୍ୟର ରାଜା କୋୟିସସ୍ ମନ୍ଦିରର ଖମ୍ବ ତୋଳାଇବା ବ୍ୟତୀତ କେତେଗୁଡ଼ିଏ ସ୍ୱର୍ଣ୍ଣ-ତିଆରି ଗାଈ ଏହି ମନ୍ଦିରରେ ସଜ୍ଜିତ ହେବା ପାଇଁ ଦାନ କରିଥିଲେ । ଧୀରେ ଧୀରେ ଏହି ମନ୍ଦିର ତିଆରି ପାଇଁ ଅସଂଖ୍ୟ ଧନରତ୍ନ ସାରା ଏସିଆ ମହାଦେଶର ଲୋକମାନଙ୍କଠାରୁ ମିଳିଥିଲା । ଏହି ମନ୍ଦିରରେ ଡାଏନା ଦେବୀଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହେଲା । ଏହି ମୂର୍ତ୍ତିଟି ସ୍ୱର୍ଗରୁ ଖସି ପଡ଼ିଥିଲା ବୋଲି ଲୋକେ କହନ୍ତି । ଏହି ମନ୍ଦିରର ଉଚ୍ଚତା ଓ ସୌନ୍ଦର୍ଯ୍ୟ ସେ ଯୁଗର ସପ୍ତାଶ୍ଚର୍ଯ୍ୟ ଭିତରୁ ଗୋଟିଏ ବୋଲି ସ୍ୱୀକୃତି ମିଳିଥିଲା ।

ଏହି ମନ୍ଦିରଟି ବେଶୀଦିନ ରହିପାରିଲାନି । ଖ୍ରୀ:ଅ: ତୃତୀୟ ଶତାବ୍ଦୀରେ ଗୋଥ୍‌ମାନେ ଏହି ସହର ଓ ମନ୍ଦିରକୁ ଆକ୍ରମଣ କରି ନଷ୍ଟ କରିଦେଲେ ଓ ଏଥିରେ ଥିବା ଧନରତ୍ନକୁ ବୋହି ନେଇଗଲେ । କିଛିଦିନ ପରେ ଏହା ଏକ ନଦୀର ଗଭୀର ସ୍ରୋତରେ ପଡ଼ି ନିଶ୍ଚିହ୍ନ ହୋଇଗଲା ।

# ଅଲମ୍ପିଆର ଜିଅସ୍

ଗ୍ରୀକ୍ ରାଜ୍ୟର ଅଲିମ୍ପିଆ ଏକ ପ୍ରସିଦ୍ଧ ନଗରୀ । ସାରା ପୃଥିବୀରେ ପ୍ରସିଦ୍ଧି ଅର୍ଜନ କରିଥିବା ଅଲିମ୍ପିକ୍ ଖେଳର ଆରମ୍ଭ ଏହି ସହରରୁ । ଏହି ଅଲିମ୍ପିକ୍ ସହରର ଅଲିମ୍ପସ୍ ପାହାଡ଼ ଉପରେ ଅତୀତ ଯୁଗରେ ଦେବତା ଜିଅସ୍‌ଙ୍କ ଏକ ମନ୍ଦିର ଥିଲା । ଗ୍ରୀକ୍‌ମାନେ ଏହି ଜିଅସ୍ ଦେବତାଙ୍କୁ ଖୁବ୍ ସମ୍ମାନ ଓ ଭକ୍ତି କରୁଥିଲେ ।

ଖ୍ରୀଷ୍ଟ ଜନ୍ମହେବାର ୪୫୦ ବର୍ଷ ପୂର୍ବେ ଗ୍ରୀକ୍‌ର ଅଧିବାସୀମାନେ ଏହି ଦେବତାଙ୍କ ପାଇଁ ଏକ ମନ୍ଦିର ପ୍ରତିଷ୍ଠା କରିବା ପାଇଁ ସ୍ଥିର କଲେ । ଖୁବ୍ ଜାକଜମକ ସହକାରେ ମନ୍ଦିରଟି ତିଆରି ହେଲା । ମନ୍ଦିର ତିଆରି ସରିବା ପରେ ଚିନ୍ତା ପଡ଼ିଲା, କିଏ ପ୍ରକୃତରେ ଜିଅସ୍‌ଙ୍କ ମୂର୍ତ୍ତି ତିଆରି କରିବ ? ସମସ୍ତେ ମତ ଦେଲେ, ଗ୍ରୀକ୍‌ର ସର୍ବଶ୍ରେଷ୍ଠ ସ୍ଥାପତ୍ୟ-ଶିଳ୍ପୀ ଫିଡ଼ିୟାସ୍ ଏହାକୁ ତିଆରି କରନ୍ତୁ । ସେତେବେଳେ ଫିଡ଼ିୟାସ୍ ଏଥେନ୍‌ସରେ ଏକ ମନ୍ଦିର ତୋଳୁଥିଲେ । ତେଣୁ ସେ ସଙ୍ଗେ ସଙ୍ଗେ ମିଳି ପାରିଲେନି । ଲୋକେ କହିଲେ, ସେ ସେଠା କାମ ଶେଷ କରି ଆସନ୍ତୁ, ଏହାକୁ ତିଆରି କରିବେ । ସେ ନ ଆସିଲା ପର୍ଯ୍ୟନ୍ତ ମୂର୍ତ୍ତି-ଗଢ଼ା ବନ୍ଦ ହେବ ।

ଦଶବର୍ଷ ପରେ ଫିଡ଼ିୟାସ୍ ଯେତେବେଳେ ଏଥେନ୍‌ସରୁ ଛୁଟି ପାଇ ଅଲିମ୍ପସ୍ ଆସିଲେ, ସେ ଏହି ମନ୍ଦିରର ସୌନ୍ଦର୍ଯ୍ୟ ଦେଖି ମୋହିତ ହୋଇଗଲେ । ସେ ଏହି ମନ୍ଦିର ପାଇଁ ଜିଅସ୍‌ଙ୍କର ଏକ ବସିଥିବା ମୂର୍ତ୍ତି ସୁନା ଓ ହାତୀଦାନ୍ତରେ ତିଆରି କଲେ । ଏହି ମୂର୍ତ୍ତିଟି ଏକ ସୁନ୍ଦର ସ୍ୱର୍ଣ୍ଣ ଆସନ ଉପରେ ଅଧିଷ୍ଠିତ ହେଲା । ଏହା ଜଣେ ସାଧାରଣ ମଣିଷର ଉଚ୍ଚତାଠାରୁ ଆଠଗୁଣ ଅଧିକ ଉଚ୍ଚ ଥିଲା । ଏହି ମୂର୍ତ୍ତିଟି ଦେଖିଲେ ଲୋକେ ନିଜର ଦୁଃଖକଷ୍ଟକୁ ଭୁଲିଯାଉଥିଲେ । ଏହି ମନ୍ଦିର ଓ ମୂର୍ତ୍ତିଟି ନିଜର ସୌନ୍ଦର୍ଯ୍ୟ ପାଇଁ ସେତେବେଳେ ସପ୍ତାଶ୍ଚର୍ଯ୍ୟ ଭିତରୁ ଗୋଟିଏ ବୋଲି ପରିଗଣିତ ହେଉଥିଲା । ଏହି ମନ୍ଦିରଟି କାଳକ୍ରମେ ଭାଙ୍ଗିଗଲା । ଏହା ବର୍ତ୍ତମାନ ଆଉ ନାହିଁ । ଏହି ମନ୍ଦିର ଓ ଜିଅସ୍‌ଙ୍କ ମୂର୍ତ୍ତି



ଅଲମ୍ପିଆର ଜିଅସ୍

ତତ୍‌କାଳୀନ କେତେକ ସ୍ୱର୍ଣ୍ଣମୁଦ୍ରାରେ ସ୍ଥାନ ପାଇଥିଲା । ସେଥିରୁ ମନ୍ଦିର ଓ ମୂର୍ତ୍ତିର ଅପରୂପ ସୌନ୍ଦର୍ଯ୍ୟ କଥା ଜଣାପଡ଼େ । ଅଲିମ୍ପିଆରେ ଏକ ବଡ଼ ଭୂମିକମ୍ପ ଫଳରେ ଏହି ମନ୍ଦିରଟି ଲୋପ ପାଇଗଲା । ଏହାର ଭଗ୍ନାବଶେଷର କିଛି ଅଂଶ ଅଲିମ୍ପସ୍‌ରେ ବର୍ତ୍ତମାନ ପର୍ଯ୍ୟନ୍ତ ଅଛି ।

# ରାଜା ମସୋଲସ୍‌ଙ୍କ ସମାଧି-ମନ୍ଦିର

ମୋଗଲ ସମ୍ରାଟ୍ ଶାହାଜାହାନ୍‌ଙ୍କ ରାଣୀ ବେଗମ୍ ମମତାଜଙ୍କର ଅକାଳରେ ମୃତ୍ୟୁ ହୋଇଥିଲା । ବେଗମ୍‌ଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମ୍ରାଟ୍ ତାଜମହଲ ସୃଷ୍ଟି କଲେ । ତାହା ମଧ୍ୟଯୁଗର ଏକ ସପ୍ତାଶ୍ଚର୍ଯ୍ୟ । ସେହିପରି କୋରିଆ ରାଜ୍ୟର ରାଣୀ ଆରଟେମିସିଆ ନିଜ ସ୍ୱାମୀ ମସୋଲସ୍‌ଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିଜ ରାଜ୍ୟର ରାଜଧାନୀ ହେଲିକାରନାସସ୍‌ଠାରେ ଏକ ସ୍ମୃତିମନ୍ଦିର ତିଆରି କରିଥିଲେ । ବର୍ତ୍ତମାନ ତୁର୍କୀର ବନ୍ଦର ବଡ଼ରମ୍ ଯେଉଁଠି ଅବସ୍ଥିତ, ସେଠି ପୁରାକାଳରେ ହେଲିକାରନାସସ୍ ସହର ଗଢ଼ି ଉଠିଥିଲା ।

ଖ୍ରୀ:ପୂ: ୩୫୩ ମସିହାରେ କୋରିଆ ରାଜ୍ୟର ରାଜା ମସୋଲସ୍ ମୃତ୍ୟୁବରଣ କଲେ । କୋରିଆ ସେତେବେଳେ ପାରସ୍ୟ ସାମ୍ରାଜ୍ୟର ଏକ ପ୍ରଦେଶ ଥିଲା । ସ୍ୱାମୀଙ୍କ ଅକାଳ ବିୟୋଗରେ ବ୍ୟଥିତ ହୋଇ ରାଣୀ ଆରଟେମେସିଆ ସ୍ୱାମୀଙ୍କ ପ୍ରତି ତାଙ୍କର ଅପୂର୍ବ ପ୍ରେମର ସାକ୍ଷୀ ସ୍ୱରୂପ ଏକ ସ୍ମୃତି ମନ୍ଦିର ଗଢ଼ିବା ପାଇଁ ଠିକ୍ କଲେ । ସେଥିପାଇଁ ଗ୍ରୀସ୍‌ର ସବୁଠାରୁ ବଡ଼ ସ୍ଥପତି ସ୍କୋପସ୍‌ଙ୍କ ପାଖକୁ ଦୂତ ପଠାଇଲେ । ଏହି ସ୍ମୃତି-ସ୍ତମ୍ଭର ନିର୍ମାଣ ପାଇଁ ସେ ନ ଆସିପାରି ଗ୍ରୀସ୍‌ର ଅନ୍ୟତମ ସୁବିଖ୍ୟାତ ଆର୍କିଟେକ୍ଟ ସେଟିରୋଲ୍, ପିଥିଅସ୍, ସ୍ଥପତି ଟମିଓଥିଅସ୍, ବ୍ରିୟାକ୍‌ସିସ୍ ଓ ଲିଓଚେରସ୍‌ଙ୍କୁ ପଠାଇଲେ ଏହି ସ୍ମୃତି-ମନ୍ଦିର ଗଢ଼ିବା ପାଇଁ । ରାଣୀ ଆର୍‌ଟେମେସିଆ କ'ଣ ଚାହାନ୍ତି, ତାଙ୍କଠାରୁ ବୁଝିନେଇ ସେମାନେ ମନ୍ଦିର ନିର୍ମାଣରେ ଲାଗିପଡ଼ିଲେ । ସ୍ମୃତି-ମନ୍ଦିରଟି ଶେଷ ହେବା ପୂର୍ବରୁ ରାଣୀ ଆରଟେମେସିଆ ଇହଧାମ ତ୍ୟାଗ କରିଥିଲେ । କାରିଗରମାନେ ରାଣୀଙ୍କ ମୃତ୍ୟୁରେ କାର୍ଯ୍ୟ ବନ୍ଦ ନ କରି ଏହାକୁ ଶେଷ କରିବା ପାଇଁ ନିଷ୍ପତ୍ତି ନେଲେ । ସେମାନେ ଯେତେବେଳେ ଏହାକୁ ଶେଷ କଲେ, ଏହାର ସୌନ୍ଦର୍ଯ୍ୟ ଓ ବିରାଟତା ଏହା ପାଇଁ ସେ ଯୁଗର ଏକ ସପ୍ତାଶ୍ଚର୍ଯ୍ୟ ଭାବରେ ଖ୍ୟାତି ଆଣିଲା । ଏହି ସ୍ମୃତି-ମନ୍ଦିରଟି ମସୋଲିୟମ୍ ଭାବରେ ନାମିତ ହେଲା ଓ ଏହିଠାରୁ ଏହି ମସୋଲିୟମ୍ ଶବ୍ଦର ସୃଷ୍ଟି । ଏହି



ରାଜା ମସୋଲସ୍‌ଙ୍କ ସମାଧି

ମନ୍ଦିରଟିର ଉଚ୍ଚତା ୧୪୦ ଫୁଟ ଓ ଏହାର ଚତୁଃପାର୍ଶ୍ୱର ଲମ୍ବ ୧୧୧ ଫୁଟ । ଚାରି ପାଖରେ ୩୬ଗୋଟି ଶଙ୍ଖମଲମଲ ପଥରର ଖମ୍ବ ଉପରେ ଏହି ସ୍ମୃତିମନ୍ଦିରଟି ରହିଥିଲା । ମନ୍ଦିର ପର୍ଯ୍ୟନ୍ତ ଉଠିବା ପାଇଁ ୨୪ଗୋଟି ପାହାଚ ଥିଲା । ଏହି ମନ୍ଦିରର ଶୀର୍ଷଦେଶରେ ଏକ ରଥ ଓ ରଥରେ ରାଜା ମସୋଲସ୍

ଓ ରାଣୀ ଆରଟେମେସିଆ ବସିଥିବାର ଏକ ମୂର୍ତ୍ତି ବିରାଜମାନ କରୁଥିଲା । ଦୂରକୁ ଜଣାପଡୁଥିଲା ଯେମିତିକି ଏହି ମନ୍ଦିରଟି ଶୂନ୍ୟରେ ଝୁଲୁଛି । ମନ୍ଦିରର କାରୁକାର୍ଯ୍ୟ ଅତି ଉଚ୍ଚକୋଟୀର ଥିଲା ।

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ସେଣ୍ଟ୍ ଜନ୍ ଏହି ସହରକୁ ସର୍ବମୟ କର୍ତ୍ତା ହୋଇ ଆସିଥିଲେ । ତାଙ୍କୁ ଏହି ମନ୍ଦିରଟି ଭଲ ଲାଗିଲା ନାହିଁ । ସେ ଏହାକୁ ଭାଙ୍ଗିଦେଇ ଏଠାରେ ଗୋଟିଏ ଦୁର୍ଗ ପ୍ରତିଷ୍ଠା କଲେ । ଏହି ମନ୍ଦିରର କେତେକ ଭଗ୍ନାବଶେଷ ବର୍ତ୍ତମାନ ଲଣ୍ଡନର ବ୍ରିଟିଶ୍ ମିଉଜିୟମ୍‌ରେ ରଖାଯାଇଛି ।

## ମଧ୍ୟଯୁଗର ସପ୍ତାଶ୍ଚର୍ଯ୍ୟ

୧. **କାମକୁରର ବୌଦ୍ଧମୂର୍ତ୍ତି**
ଏହା ଜାପାନର ଟୋକିଓ ନିକଟରେ ଅବସ୍ଥିତ ।

୨. **ଆଙ୍ଗକରଓ୍ୱାଟ୍**
ଏହି ମନ୍ଦିରଟି କାମ୍ବୋଡ଼ିଆ ରାଜ୍ୟର ଏକ ଜଙ୍ଗଲ ମଧ୍ୟରେ ଅଛି ।

୩. **କଲୋସିୟମ୍**
ଏହା ପୁରାତନ ରୋମ୍‌ର ଖେଳଦେଖା ସ୍ଥାନ ।

୪. **ପିସାର ତିର୍ଯ୍ୟକ୍ ମିନାର**
ଏହା ଇଟାଲୀ ରାଜ୍ୟରେ ଅବସ୍ଥିତ ।

୫. **ଚୀନ୍‌ର ବିରାଟ ପ୍ରାଚୀର**
ଏହା ଚୀନ୍ ରାଜ୍ୟର ଉତ୍ତର-ପଶ୍ଚିମ ସୀମାରେ ତିଆରି ହୋଇଛି ।

୬. **ତାଜମହଲ**
ଏହା ଦିଲ୍ଲୀ ନିକଟବର୍ତ୍ତୀ ଆଗ୍ରାରେ ଥିବା ପୃଥିବୀ-ବିଖ୍ୟାତ ସମାଧି-ମନ୍ଦିର ।

୭. **ଇଷ୍ଟର ଦ୍ୱୀପର ପଥର-ମୂର୍ତ୍ତି ।**
ଏହା ପ୍ରଶାନ୍ତ ମହାସାଗରର ଦକ୍ଷିଣ ଅଂଶରେ ଅବସ୍ଥିତ ।

# କାମକୁରର ବୌଦ୍ଧମୂର୍ତ୍ତି

ଜାପାନର କାମକୁରଠାରେ ବୁଦ୍ଧଦେବଙ୍କର ଏକ ବସିଥିବା ବ୍ରୋଞ୍ଜମୂର୍ତ୍ତି ରହିଛି । ଏହି ବସିଥିବା ବୁଦ୍ଧମୂର୍ତ୍ତିଟିର ଉଚ୍ଚତା ହେଉଛି ଗୋଟିଏ ପାଞ୍ଚତାଲା-



କାମକୁରର ବୌଦ୍ଧମୂର୍ତ୍ତି

ବିଶିଷ୍ଟ ବିରାଟ କୋଠାର ଉଚ୍ଚତା ସହିତ ସମାନ । ଏହି ମୂର୍ତ୍ତିଟି ଜାପାନର ରାଜଧାନୀ ଟୋକିଓଠାରୁ ଅଳ୍ପ ଦୂରରେ ଅବସ୍ଥିତ । ଏହି ମୂର୍ତ୍ତିଟି କାରୁକାର୍ଯ୍ୟରେ ପରିପୂର୍ଣ୍ଣ । ମୂର୍ତ୍ତିଟିର ଆଖି ସୁନାରେ ତିଆରି । ଏହାର ଆଖିର ଲମ୍ବ ତିନିଫୁଟ ପାଖାପାଖି । ବୁଦ୍ଧମୂର୍ତ୍ତିଟିର କପାଳ ମଝିରେ ଏକ ବିନ୍ଦୁ ଅଛି । ଏହା ତାଙ୍କର ଅସୀମ ଜ୍ଞାନର ପ୍ରତୀକ । ଏହି ବିନ୍ଦୁଟି ଖାଣ୍ଟି ରୁପାରେ ତିଆରି । ଏହାର ଓଜନ ହେଉଛି ପନ୍ଦର କିଲୋଗ୍ରାମ୍ ପାଖାପାଖି । ବୁଦ୍ଧମୂର୍ତ୍ତିର ପାଟି ତିନିଫୁଟ ଲମ୍ବ । ବସିଥିବା ଅବସ୍ଥାରେ ଗୋଟିଏ ଆଣ୍ଠୁଠାରୁ ଅନ୍ୟ ଆଣ୍ଠୁଟିର ଲମ୍ବ ୩୫ ଫୁଟ । ଏହି ମୂର୍ତ୍ତିର ଭିତର ପାଖରେ ଏକ ସିଡ଼ି ରହିଛି । ଏଥିରେ ଦର୍ଶକମାନେ ଯାଇ ମୂର୍ତ୍ତିଟିର କାନ୍ଧ ପର୍ଯ୍ୟନ୍ତ ଉଠିପାରନ୍ତି । ଏହି ମୂର୍ତ୍ତିଟି ପ୍ରଥମରୁ ଏକ ମନ୍ଦିର ଭିତରେ ଥିଲା । ଭୂମିକମ୍ପ ଓ ସମୁଦ୍ର ଜୁଆର ଯୋଗୁଁ ଏହି ମନ୍ଦିରଟି ଭାଙ୍ଗିଗଲା । ଏବେ ଏହା ମୁକ୍ତ ଆକାଶ ତଳେ ଅବସ୍ଥିତ ।

ଜାପାନରେ ତିନୋଟି ବଡ଼ ବଡ଼ ବୁଦ୍ଧଦେବଙ୍କ ମୂର୍ତ୍ତି ଅଛି । ସେଥିଭିତରୁ କାମକୁରର ମୂର୍ତ୍ତିଟି ସବୁଠାରୁ ସୁନ୍ଦର । ସବୁଠାରୁ ଉଚ୍ଚା ମୂର୍ତ୍ତି ହେଉଛି ନାରାଠାରେ ଥିବା ମୂର୍ତ୍ତି । ଏହା ଏକ ମନ୍ଦିର ଭିତରେ ଅଛି । ଏହା ମଧ୍ୟ ବ୍ରୋଞ୍ଜରେ ତିଆରି । ତୃତୀୟ ବୁଦ୍ଧମୂର୍ତ୍ତି କିୟୋଟୋ ସହରରେ ଅବସ୍ଥିତ । ଏହା କାଠରେ ତିଆରି । ଏହାର ଆକାର ମଧ୍ୟ ବେଶ୍ ବଡ଼ ।

# ଆଙ୍ଗକରଓ୍ୱାଟ୍

କାମ୍ବୋଡ଼ିଆ ରାଜ୍ୟର ଜଙ୍ଗଲ ଭିତରେ ଗୋଟିଏ ଅତି ସୁନ୍ଦର ମନ୍ଦିର ଅଛି । ଏହାର ଗାତ୍ରର ପ୍ରତି ସ୍ତରେ ସ୍ତରେ ଅପୂର୍ବ କଳାସ୍ଥାପତ୍ୟ ଫୁଟି ଉଠୁଛି । ଏଭଳି ସୁନ୍ଦର ମନ୍ଦିର ପୃଥିବୀରେ ଖୁବ୍ ବିରଳ । ଏହି ମନ୍ଦିରଟିର ନାମ ହେଉଛି ଆଙ୍ଗକରଓ୍ୱାଟ୍ । ଏହା ମଧ୍ୟଯୁଗର ସପ୍ତାଶ୍ଚର୍ଯ୍ୟ ଭିତରୁ ଗୋଟିଏ । ଏହି ମନ୍ଦିରଟି ୬୦୦/୭୦୦ ବର୍ଷ ତଳେ ତିଆରି ହୋଇଥିଲା । ଏହାକୁ କେଉଁମାନେ ତିଆରି କରିଥିଲେ, ତାହା ଜଣା ନାହିଁ । ତେବେ ଯେଉଁମାନେ ଏହାକୁ ତିଆରି କରିଥିଲେ, ସେମାନେ ସମ୍ଭବତଃ କାମ୍ବୋଡ଼ିଆର ଲୋକ । ସେହି ଲୋକମାନେ ଇତି ମଧ୍ୟରେ ପୂରାପୂରି ଶେଷ ପାଇ ଯାଇଛନ୍ତି ।

ଏହି ମନ୍ଦିରଟି ସମ୍ଭବତଃ ବ୍ରହ୍ମା ବା ବୁଦ୍ଧଦେବଙ୍କୁ ପୂଜା କରିବା ପାଇଁ ତିଆରି ହୋଇଥିଲା । ଏହା ୧୮୦ ଏକର ବିଶିଷ୍ଟ ଏକ ସୁନ୍ଦର ଉଦ୍ୟାନରେ ଅବସ୍ଥିତ । ଏହି ମନ୍ଦିରଟିର ଲମ୍ବ ୮୦୦ ଫୁଟ, ଓସାର ୬୦୦ ଫୁଟ । ସ୍ତର ସ୍ତର ହୋଇ ତିନୋଟି ସ୍ତରରେ ମନ୍ଦିରର ପୃଷ୍ଠତଳ ତିଆରି ହୋଇଛି । ମନ୍ଦିରର ଚାରିପାଖରେ କମନୀୟ କାରୁକାର୍ଯ୍ୟପୂର୍ଣ୍ଣ ଗମ୍ବୁଜଭଳି ମନ୍ଦିର ଆକାଶକୁ ଭେଦକରି ଠିଆ ହୋଇଛି । ମନ୍ଦିର ଗାତ୍ରରେ ହଜାର ହଜାର ସଂଖ୍ୟାରେ ମଣିଷମୂର୍ତ୍ତି, ମାଙ୍କଡ଼, ସାପ ଆଦିର ମୂର୍ତ୍ତି ଖୋଦିତ ହୋଇଅଛି । ଏହାର ଗାତ୍ରରେ ବହୁ ଯୁଦ୍ଧର ଚିତ୍ର, ନର୍ତ୍ତକୀମାନଙ୍କ ନୃତ୍ୟସଭାର ଦୃଶ୍ୟ, ଯୋଦ୍ଧାମାନଙ୍କ ଶିକାରର ଚିତ୍ର ଓ ଦୈନନ୍ଦିନ ଜୀବନର ବହୁ କାର୍ଯ୍ୟାବଳୀର ଦୃଶ୍ୟ ଖୋଦିତ ହୋଇଛି । ଆମ କୋଣାର୍କକୁ ଛାଡ଼ିଦେଲେ ପଥର ଉପରେ ଖୋଦିତ ଏତେ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ଚାରୁକଳା ଆଉ କେଉଁଠି ଦେଖାଯାଏ ନାହିଁ ।

ଏହି ମନ୍ଦିରଟି କାମ୍ବୋଡ଼ିଆ ରାଜ୍ୟରେ ବହୁତ ଦିନ ଧରି ବଣ ଭିତରେ ଗଛଲତା ଆଡୁଆଳରେ ଅଦୃଶ୍ୟ ହୋଇ ରହିଯାଇଥିଲା । ହେନେରୀ ମୋଉହତ୍ ନାମକ ଜନୈକ ଫରାସୀ ପ୍ରାଣିତତ୍ତ୍ୱବିତ୍ ଜଙ୍ଗଲରେ ନୂଆ ନୂଆ ପ୍ରାଣୀ ଖୋଜୁ ଖୋଜୁ ୧୮୬୧ ମସିହାରେ ଏହି ମନ୍ଦିରଟିକୁ ଆବିଷ୍କାର କଲେ ।



ଆଙ୍ଗକରଓ୍ୱାଟ୍

ଏହା ଆଙ୍ଗକରଥମ୍ ନାମକ ଏକ ସହରରେ ଅବସ୍ଥିତ । ଏହି ସହରଟି ୧୪୩୧ ମସିହାରେ ଖୁବ୍ ପ୍ରସିଦ୍ଧି ଲାଭ କରିଥିଲା । ଏହି ମନ୍ଦିରଟି ପ୍ରଥମେ ହିନ୍ଦୁଦେବତା ବିଷ୍ଣୁଙ୍କ ପାଇଁ ତିଆରି ହୋଇଥିଲା । ମନ୍ଦିରଟି ତିଆରି ସରିଲା ବେଳକୁ ଏଠାରେ ବୌଦ୍ଧଧର୍ମ ପ୍ରବେଶ କରିବାରୁ ହିନ୍ଦୁ ଦେବଦେବୀଙ୍କ ପାଖରେ ବୌଦ୍ଧମୂର୍ତ୍ତି ରଖାଗଲା । ମନ୍ଦିରଟି ବାଲି ପଥରରେ

ତ୍ରିଆରି । ଖଣ୍ଡିଏ ଖଣ୍ଡିଏ ପଥରର ଓଜନ ଗୋଟିଏ ଟନ୍ ପାଖାପାଖି । ଏଗୁଡ଼ିକ ୪୦ ମାଇଲ ଦୂର ପାହାଡ଼ରୁ ହାତୀ ସାହାଯ୍ୟରେ ଅଣାଯାଇଥିଲା । ଏହି ଆଙ୍ଗକରଥମ୍ ସହର ଓ ଆଙ୍ଗକରଓ୍ଵାଟ୍ ମନ୍ଦିର ହଠାତ୍ ପରିତ୍ୟକ୍ତ ହୋଇପଡ଼ିଲା । ଏହାର କାରଣ କ'ଣ ଜଣାପଡ଼ିନି । କେତେକେ କହନ୍ତି, ଏକ ପ୍ରକାର ପ୍ଲେଗ୍ ରୋଗ ଏଠାରେ ଦେଖାଦେବାରୁ ଲୋକେ ଏ ସହର ଛାଡ଼ି ପଳାଇଲେ । ଆଉ କେତେକେ କହନ୍ତି, ଏଠାରେ ଭୂତମାନଙ୍କର ଉତ୍ପାତ ହେବାରୁ ଏଠାକାର ଅଧିବାସୀମାନେ ଏହି ସହର ଛାଡ଼ି ପଳାଇଲେ । ସହରଟି ପରିତ୍ୟକ୍ତ ହେବାରୁ ମୂର୍ତ୍ତିଗୁଡ଼ିକ ଉପରେ ଗଛଲତା ମାଡ଼ିଯାଇ ଏହାକୁ ଲୋକଲୋଚନ ଅନ୍ତରାଳରେ ଲୁଚାଇ ରଖିଲା । ହେନେରୀ ମୋଉହଟ ଯଦି ଏହାକୁ ବାହାର କରି ନ ଥାନ୍ତେ, ଏହା ସେହିପରି ପରିତ୍ୟକ୍ତ ହୋଇ ପଡ଼ିଥାନ୍ତା । ଏହା ଲୋକଲୋଚନକୁ ଆସିବା ପରେ ଜଣାଗଲା ଏହାର କାରୁକାର୍ଯ୍ୟ ।

# କଲୋସିୟମ୍

ଏହା ପୁରାତନ ରୋମ୍‌ର ଏକ ଖେଳ ଦେଖିବା ଷ୍ଟେଡ଼ିୟମ୍ । ଅବଶ୍ୟ ଏହି ଖେଳ କିଛି ସାଧାରଣ ଖେଳ ନୁହେଁ । ଦୁର୍ଦ୍ଧାନ୍ତ ସିଂହ, ବ୍ୟାଘ୍ର ସହିତ ମଣିଷମାନଙ୍କର ଲଢ଼େଇ । ବେଳେ ବେଳେ ଗ୍ଲେଡ଼ିୟେଟରମାନେ



କଲୋସିୟମ୍

ନିଜ ନିଜ ମଧ୍ୟରେ ଖଣ୍ଡା ଧରି ଯୁଦ୍ଧ କରୁଥିଲେ । ଏଥିରେ ମଣିଷମାନେ ଯଦି ପ୍ରାଣୀଦ୍ୱାରା ନିହତ ହେଉଥିଲେ କି ଗ୍ଲେଡ଼ିୟେଟରୁ କେହି ହତ ହେଉଥିଲେ, ଦର୍ଶକମାନେ ତାହା ଦେଖିବାକୁ ଭଲ ପାଉଥିଲେ । ପୁରାତନ ଯୁଗର ଖ୍ରୀଷ୍ଟଧର୍ମାବଲମ୍ବୀମାନଙ୍କୁ ବେଳେବେଳେ ଏହି କଲୋସିୟମ୍‌ରେ ଦୁର୍ଦ୍ଧାନ୍ତ ସିଂହ ସମ୍ମୁଖରେ ଫୋପାଡ଼ି ଦିଆଯାଉଥିଲା । ସେମାନେ ଏହାକୁ ଦର୍ଶକମାନଙ୍କ ସମ୍ମୁଖରେ ଟିକି ଟିକି କରି ଖାଇଯାଉଥିଲେ । ସେକାଳର ରୋମ୍ ଅଧିବାସୀମାନେ ସେଥିରୁ ଆନନ୍ଦ ପାଉଥିଲେ । ଏହି କଲୋସିୟମ୍ ଚାରିତାଲା କୋଠା ଉଚ୍ଚା । ଏହାର ମଝିରେ ଖେଳ ପାଇଁ ଯେଉଁ ସ୍ଥାନ ଥିଲା, ତାହା ୨୮୧ ଫୁଟ ଲମ୍ବ, ୧୭୭ ଫୁଟ ଚଉଡ଼ା, ଗୋଟିଏ ସାଧାରଣ ଫୁଟବଲ ପଡ଼ିଆଠାରୁ କିଞ୍ଚିତ ବଡ଼ । ଏଥିରେ ଏକ ସଙ୍ଗେ ୫୦,୦୦୦ ଦର୍ଶକ ବସି ଖେଳ ଦେଖିପାରୁଥିଲେ । ସେ କାଳରେ ଏହାର ନାମ ଥିଲା ଫ୍ଲେଭିୟାନ୍ ଏମ୍‌ଫିଥିଏଟର । ଏହାକୁ ତିଆରି କରିଥିଲେ ରୋମ୍ ଶାସକ ଭେସ୍‌ପେସିଆନ୍ । ରୋମ୍‌ର ଦୁର୍ଦ୍ଧର୍ଷ ଶାସକ ନିରୋଙ୍କ ସ୍ୱର୍ଣ୍ଣମୟ ପ୍ରାସାଦକୁ ଲାଗିଥିବା ଉଦ୍ୟାନର ଏକ ଅଂଶରେ ଏହା ତିଆରି ହୋଇଥିଲା । ଏହା ୭୨ ଖ୍ରୀଷ୍ଟାବ୍ଦରେ ତିଆରି ହୋଇଥିଲା । ଏହା ସମ୍ମୁଖରେ ନିରୋଙ୍କର ଏକ ବିରାଟ ବ୍ରୋଞ୍ଜ ତିଆରି ମୂର୍ତ୍ତି ଥିଲା, ଯାହାର ଉଚ୍ଚତା ଥିଲା ୧୦୦ ଫୁଟରୁ ଅଧିକ । କାଳର ଗତିରେ ଏହି ମୂର୍ତ୍ତିଟି ଭାଙ୍ଗିଯାଇଛି, ଏହାର ଆଉ ଚିହ୍ନବର୍ଣ୍ଣ ନାହିଁ ।

ଏହା ଚାରିପାଖରେ ଯେଉଁ ଚାରିତାଲା କୋଠା ଥିଲା, ତାହା ପ୍ରଥମତଃ କାଠରେ ତିଆରି ହୋଇଥିଲା । ଅନ୍ୟ ବିଜିତ ରାଜ୍ୟରୁ ଅଣାଯାଇ ଦାସମାନଙ୍କ ଦ୍ୱାରା ଏହା ତିଆରି ହୋଇଥିଲା । ଏହା କିଛିଦିନ ପରେ ନିଆଁଲାଗି ପୋଡ଼ିଯିବାରୁ ୨୧୭ ଖ୍ରୀଷ୍ଟାବ୍ଦରେ ପଥର ଓ ଚୂନରେ ତିଆରି ହୋଇଥିଲା । ଏହା ଉପରକୁ ଗୋଲାକାର ଦିଶିଲେ ହେଁ ଏହା ଗୋଲାକାର ନୁହେଁ, ଅଣ୍ଡାକାର । ଏଥିରେ ଯେଉଁ ହିଂସ୍ରଜନ୍ତୁ ଓ ମଣିଷମାନଙ୍କ ଯୁଦ୍ଧ ହେଉଥିଲା, ସେଥିରେ ଦିନେ ଦିନେ ହଜାର ହଜାର ପଶୁ ଓ ଶହ ଶହ ମଣିଷ ମରି ପଡୁଥିଲେ । ଏହା ମଧ୍ୟଯୁଗର ଏକ ଆଶ୍ଚର୍ଯ୍ୟ ଭାବରେ ପରିଗଣିତ ହେଉଥିଲା ।

# ପିସାର ତିର୍ଯ୍ୟକ୍ ମିନାର



ପିସାର ତୀର୍ଯ୍ୟକ୍ ମିନାର

ପିସା ହେଉଛି ଇଟାଲୀର ଏକ ସୁବିଖ୍ୟାତ ସହର । ଏଠାରେ ଗୋଟିଏ ପ୍ରକାଣ୍ଡ ମିନାର ଅଛି, ଯାହାର ଉଚ୍ଚତା ୧୮୦ ଫୁଟ ପାଖାପାଖି । ଏହା ଢଳିକରି ରହିଛି ସତ, କିନ୍ତୁ ଭାଙ୍ଗିପଡୁନି । ଏହି ମିନାରଟି ଢଳି ପଡ଼ିବାର କାରଣ ହେଉଛି, ଏହା ବାଲି ଉପରେ ତିଆରି ହୋଇଥିଲା । ଗୋଟିଏ ପାଖର ବାଲି ଏହାର ଓଜନର ଚାପ ଯୋଗୁଁ ତଳକୁ ଦବି ଯିବାରୁ ମିନାରଟି ସେହିପାଖକୁ ଢଳିପଡ଼ି ରହିଗଲା । ଏହା ବିଗତ ୬୦୦ ବର୍ଷ ଧରି ସେମିତି ଢଳିକରି ରହିଛି, ଭାଙ୍ଗିପଡୁନି । ଏବେ ମଧ୍ୟ ଏହା ସେମିତି ବଙ୍କେଇ ହୋଇ ଠିଆ ହୋଇଛି । ଏହା ମଧ୍ୟ ଦିନକୁ ଦିନ ଢଳିବାରେ ଲାଗିଛି । ଏହାର ଢ଼ଳିବା ବନ୍ଦ ହୋଇନି । ବୈଜ୍ଞାନିକମାନେ ଏହି ଢଳିବା ବନ୍ଦ କରିବାକୁ ନାନା ପ୍ରକାର ଚେଷ୍ଟା କରି ବିଫଳ ହୋଇଛନ୍ତି ।

ଏହି ମିନାରଟି ଆଠତାଲା ବିଶିଷ୍ଟ । ଢଳିପଡୁନି କି ଭାଙ୍ଗି ପଡୁନି, ଏହାହିଁ ଏହାର ଆଶ୍ଚର୍ଯ୍ୟ । ଏହି ମିନାରର ଶେଷ ମହଲାରୁ ବୈଜ୍ଞାନିକ ଗାଲିଲିଓ ''ପୃଥିବୀ ଘୂରୁଛି'' ବୋଲି ଏକ ପରୀକ୍ଷା କରି ସାରା ପୃଥିବୀକୁ ଚକିତ କରିବା ସଙ୍ଗେ ସଙ୍ଗେ ଏହି ମିନାରର ପ୍ରସିଦ୍ଧିକୁ ବଢ଼ାଇ ଦେଇଥିଲେ । ଏଥିପୂର୍ବରୁ ସାଧାରଣ ଧାରଣା ଥିଲା, ଯେତେବେଳ ଦୁଇଟି ଛୋଟବଡ଼ ପଥର ଆକାଶରୁ ଖସାଇ ଦିଆଯାଏ, ବଡ଼ ପଥରଟି ଆଗେ ଭୂମି ଉପରେ ପଡ଼େ, ସାନ ପଥରଟି ପଛରେ ପଡ଼େ । କିନ୍ତୁ ଗାଲିଲିଓ ଏହି ମିନାର ଉପରକୁ ଦୁଇଟି ଛୋଟ ବଡ଼ ପଥର ନେଇ ଏକ ସଙ୍ଗେ ଖସାଇ ଦେଖାଇଦେଲେ ଯେ, ଦୁଇଟିଯାକ ସମାନ ସମୟରେ ପୃଥିବୀ ପୃଷ୍ଠରେ ପଡ଼େ ।

# ଚୀନ୍‌ର ବିରାଟ ପ୍ରାଚୀର

ଅନୁମାନ କର ଦୁଇତାଲା ଉଚ୍ଚା ଗୋଟିଏ ବିରାଟ ପଥର-ପ୍ରାଚୀର, ଯାହାକି ଦିଲ୍ଲୀଠାରୁ କଟକ ପର୍ଯ୍ୟନ୍ତ ଲମ୍ବିଛି, ସେମିତି ଏକ ପ୍ରାଚୀର ଚୀନ୍‌ର ଗୋଟିଏ ପାଖରେ ଆଜକୁ ଦୁଇହଜାର ବର୍ଷ ତଳେ ତିଆରି ହୋଇଥିଲା । ଚୀନ୍‌କୁ ମଧ୍ୟ-ଏସିଆର ଟାରଟାରମାନେ ବାରମ୍ବାର ଆକ୍ରମଣ କରି ଘୋର କ୍ଷତି ଘଟାଉଥିଲେ । ସେମାନଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ଏହି ବିରାଟ ପ୍ରାଚୀର ତିଆରି କରାଯାଇଥିଲା । ଏହା କିଛି ସାଧାରଣ କାନ୍ଥ ଭଳି ନୁହେଁ । ଏହି ପ୍ରାଚୀରର କାନ୍ଥର ମୋଟେଇ ହେଉଛି ୧୦-୨୫ଫୁଟ ପର୍ଯ୍ୟନ୍ତ । ଏହାର ଉଚ୍ଚତା ୨୦-୩୦ଫୁଟ ପାଖାପାଖି । ଏହି କାନ୍ଥର ଶୀର୍ଷଦେଶରେ ଏକ ୧୦ ଫୁଟ ଓସାରର ସଡ଼କ ଯାଇଛି । ପ୍ରତି ୧୦୦ ଗଜ ଦୂରରେ ଗୋଟିଏ ଲେଖାଏଁ ପର୍ଯ୍ୟବେକ୍ଷଣ ଟାୱାର ତିଆରି କରାଯାଇଛି । ଏହି ଟାୱାରରେ ଛିଡ଼ା ହୋଇ ଦୂରକୁ ସୈନ୍ୟମାନେ ଲକ୍ଷ୍ୟ କରନ୍ତି, ଶତ୍ରୁମାନେ ସେମାନଙ୍କ ଆଡ଼କୁ ଆସୁଛନ୍ତି କି କଅଣ । ସେହିଭଳି ୧୫୦୦୦ ପର୍ଯ୍ୟନ୍ତ ଟାୱାର ସେହି ପ୍ରାଚୀରରେ ରହିଛି । ଏହା ଉପରେ ସୈନ୍ୟମାନେ ସଦାସର୍ବଦା ରହି ଚୀନ୍‌ର ସେହି ପାର୍ଶ୍ୱକୁ ଜଗି ରହିଥାନ୍ତି । ଯେତେବେଳେ ସେମାନେ ଲକ୍ଷ୍ୟ କରନ୍ତି ଦୂରରୁ ଶତ୍ରୁମାନେ ଆସୁଛନ୍ତି, ସେମାନେ ସ୍ଥାନେ ସ୍ଥାନେ ନିଆଁ ଜାଳି ସାବଧାନ କରାଇ ଜଣାଇଦିଅନ୍ତି ଶତ୍ରୁର ଆଗମନ-ବାର୍ତ୍ତା । ଏହା ଫଳରେ ଚୀନ୍ ସୈନିକମାନେ ଆଗାମୀ ଯୁଦ୍ଧ ପାଇଁ ସଜବାଜ ହୋଇଯାନ୍ତି । ଏହି ପ୍ରାଚୀରଟି ୨୦୦୦ ବର୍ଷ ତଳେ ତିଆରି ହୋଇଥିଲେ ହେଁ ଏବେ ବି ସେମିତି ରହିଛି । ଏହି କିଛିବର୍ଷ ପୂର୍ବେ ଚୀନ୍ ଗସ୍ତ ବେଳେ ଆମ ପୂର୍ବତନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଏହି ପ୍ରାଚୀର ଦେଖିଥିଲେ । ଖ୍ରୀଷ୍ଟ ଜନ୍ମ ହେବାର ଦୁଇଶହ ବର୍ଷ ପୂର୍ବରୁ ଏହାର ତିଆରି ଆରମ୍ଭ ହୋଇଥିଲା, ଖ୍ରୀଷ୍ଟ ଜନ୍ମ ହେଲାବେଳକୁ ଏହା ଶେଷ ହୋଇଥିଲା । ଏହି ପ୍ରାଚୀରର ଲମ୍ବ ହେଉଛି ୧୪୦୦ ମାଇଲ । ଏହି ପ୍ରାଚୀର ପାହାଡ଼, ପର୍ବତ,



ଚୀନ୍‌ର ବିରାଟ ପ୍ରାଚୀର

ନଈ, ନାଳ, ମରୁଭୂମି ଉପର ଦେଇ ଯାଇଛି । ଏହି ପ୍ରାଚୀରଟି ମାଟି, ପଥର, ଇଟାରେ ତିଆରି । ଏହି ପ୍ରାଚୀରର ବିରାଟତା ଦେଖିଲେ ଏହାକୁ ପୃଥିବୀର ମଧ୍ୟଯୁଗୀୟ ସପ୍ତାଶର୍ଯ୍ୟ ନ କହି ରହିହେବନି । ଚୀନ୍‌ର ମହାରାଜା ସି ହ୍ୱାଙ୍ଗ୍ ଚି ଶତ୍ରୁ -ଆକ୍ରମଣରୁ ନିଜ ରାଜ୍ୟକୁ ରକ୍ଷାକରିବା ପାଇଁ ଏହାକୁ ତିଆରି କରାଇଥିଲେ । ହୁନ୍ ଓ ମଙ୍ଗୋଲମାନଙ୍କୁ ଏହା ଚୀନ୍ ଆକ୍ରମଣ କରିବାକୁ ବାଧା ଦେଉଥିଲା । ସି ହ୍ୱାଙ୍ଗ୍ ଚିଙ୍କ ସମୟରେ ଏହି ପ୍ରାଚୀରର ମାତ୍ର ଅଧେ ଅଂଶ ତିଆରି ହୋଇଥିଲା । ବାକୀ ଅଧକ ପରବର୍ତ୍ତୀ ରାଜାଙ୍କ ସମୟରେ ତିଆରି ହୋଇଥିଲା । ଏହି ପ୍ରାଚୀରଟି ନାଲି ଇଟାରେ ତିଆରି । ଏହା ଏତେ ସୁଦୃଢ଼ ହୋଇଥିଲେ ମଧ୍ୟ ମଙ୍ଗୋଲ ଆକ୍ରମଣକାରୀ ଚେଙ୍ଗିଜ୍ ଖାଁଙ୍କୁ ବାଧା ଦେଇପାରି ନ ଥିଲା । ସେ ଏହାକୁ ଟପି ଚୀନ୍ ରାଜ୍ୟରେ ଲୁଣ୍ଠନ କରିଥିଲେ ।

# ତାଜମହଲ

ତାଜମହଲ ପୃଥିବୀର ସବୁଠାରୁ ସୁନ୍ଦରତମ ସୃଷ୍ଟି । ଏହାର ସୌନ୍ଦର୍ଯ୍ୟ ସହିତ ପୃଥିବୀର କୌଣସି ରାଜପ୍ରାସାଦ, ମନ୍ଦିର, ଗିର୍ଜା, ମସଜିଦ୍‌ର



ତାଜମହଲ

ସୌନ୍ଦର୍ଯ୍ୟ ତୁଳନୀୟ ନୁହେଁ । ଏହା ଏକ ସମାଧି-ମନ୍ଦିର । ମୋଗଲ ବାଦଶାହା ଶାହାଜାହାନଙ୍କ ବେଗମ୍ ମମତାଜ ମହଲଙ୍କ ସମାଧି ଉପରେ ସ୍ମୃତି-ମନ୍ଦିରଟି ତିଆରି ହୋଇଛି । ଏହି ମନ୍ଦିରଟି ପୂରାପୂରି ବଛା ବଛା ଶଙ୍ଖ ମଲମଲ ପଥରରେ ତିଆରି । ଏହା ଉତ୍ତରପ୍ରଦେଶର ଆଗ୍ରାଠାରେ ଅବସ୍ଥିତ । ଏହି ସ୍ମୃତି ମନ୍ଦିରର ଯେଉଁ ଡୋମ୍ ଅଛି, ତାହା ୨୦୦ ଫୁଟ ଉଚ୍ଚ । ଶଙ୍ଖ ମଲମଲ ପଥର ଉପରେ ଯେଉଁ କାରୁକାର୍ଯ୍ୟ ଖୋଳାହୋଇ ତିଆରି କରାଯାଇଛି, ସେଭଳି ସୃଷ୍ଟି ପୃଥିବୀରେ ବିରଳ । ଏହାକୁ ଦେଖିଲେ କେତେ କାରିଗର କେତେବର୍ଷ ଧରି ଯେ ଏହାକୁ ତିଆରି କରିଥିବେ, ତାର କଳନା କରିହୁଏ ନାହିଁ । ଏହି ସ୍ମୃତି-ମନ୍ଦିରଟି ପ୍ରାୟ ୩୦୦ ବର୍ଷ ତଳେ ତିଆରି ହୋଇଥିଲେ ହେଁ ଦେଖିଲେ ଏବେ ତିଆରି ହେଲାଭଳି ପ୍ରତୀୟମାନ ହୁଏ । ଏହାଚାରିପାଖରେ ଏକ ସୁନ୍ଦର ଫୁଲବଗିଚା ଅଛି ଓ ଏହା ଲାଲ ପ୍ରସ୍ତରର ଏକ ସୁଉଚ୍ଚ ପ୍ରାଚୀର ଦ୍ୱାରା ପରିବେଷ୍ଟିତ । କଥିତ ଅଛି, ଶାହାଜାହାନ ଭାରତ ତଥା ପାରସ୍ୟ ଦେଶରୁ ବଛା ବଛା କାରିଗର ଆଣି ଏହାକୁ ତିଆରି କରାଇଥିଲେ ।

# ଇଷ୍ଟର ଦ୍ୱୀପର ପଥର ମୂର୍ତ୍ତି

ପ୍ରଶାନ୍ତ ମହାସାଗରର ଦକ୍ଷିଣ ଅଂଶରେ ଗୋଟିଏ ଦ୍ୱୀପ ଅଛି । ତା' ନାଁ' ହେଉଛି ଇଷ୍ଟର ଦ୍ୱୀପ । ଏହା ଦକ୍ଷିଣ ଆମେରିକାର ଚିଲ୍ଲୀ ରାଜ୍ୟଠାରୁ ପଶ୍ଚିମ ଦିଗକୁ ୩୨୨୦ କିଲୋମିଟର ଦୂରରେ ଅବସ୍ଥିତ । ଏହି ଦ୍ୱୀପଟିକୁ ସର୍ବପ୍ରଥମେ ୧୭୨୨ ମସିହାରେ ଓଲନ୍ଦାଜ ନାବିକ ଏଡ୍‌ମିରାଲ ରୋଗେଭିନ୍ ଆବିଷ୍କାର କରିଥିଲେ । ଏହାକୁ ସେ ସେହି ବର୍ଷ ଇଷ୍ଟର ପର୍ବଦିନରେ ଆବିଷ୍କାର କରିଥିବାରୁ ଏହାର ନାମ "ଇଷ୍ଟର ଦ୍ୱୀପ" ରଖାଯାଇଛି । ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ଏହି ଦ୍ୱୀପର ସ୍ଥାନ ସେକାଳର ମାନଚିତ୍ରରେ ନ ଥିଲା । ଆବିଷ୍କାର ଦିନଠାରୁ ଏହାର ସ୍ଥାନ ମାନଚିତ୍ରରେ ପ୍ରଦର୍ଶିତ ହେଲା । ୧୯୧୪-୧୫ ମସିହା ମଧ୍ୟରେ ଏହି ଦ୍ୱୀପର ସମୁଦ୍ର ଉପକୂଳରେ ଥିବା ପଥରମୂର୍ତ୍ତିଗୁଡ଼ିକୁ କେଥେରିନ୍ ରଉଟ୍‌ଲେଜ ନାମକ ଜଣେ ଇଂରେଜ ମହିଳା ପ୍ରଥମେ ଲୋକଲୋଚନକୁ ଆଣିଥିଲେ । ଏହି ମୂର୍ତ୍ତିଗୁଡ଼ିକ ବିଭିନ୍ନ ଆକାରର । ଏହାର ଉଚ୍ଚତା ୩ ଫୁଟଠାରୁ ୩୬ ଫୁଟ ପର୍ଯ୍ୟନ୍ତ ଅଛି । ଛୋଟ ବଡ଼ ପଥର-ମୂର୍ତ୍ତିଗୁଡ଼ିକର ସଂଖ୍ୟା ହଜାରେ ପାଖାପାଖି । ଏଥିଭିତରୁ ବଡ଼ ବଡ଼ ମୂର୍ତ୍ତିର ସଂଖ୍ୟା ୨୬୦ ହେବ । ଏହି ବଡ଼ ବଡ଼ ମୂର୍ତ୍ତିଗୁଡ଼ିକର ଓଜନ ୫୦ ଟନ୍ ପାଖାପାଖି । ସବୁଠାରୁ ବଡ଼ ମୂର୍ତ୍ତିଟିର ଉଚ୍ଚତା ୩୬ ଫୁଟ ଓ ଓଜନ ୯୦ ଟନ୍ ପାଖାପାଖି । ଏହାର ଉଚ୍ଚତା ତିନିତାଲା କୋଠାର ଉଚ୍ଚତାଠାରୁ ଅଧିକ । ଏହି ମୂର୍ତ୍ତିଗୁଡ଼ିକ ଅଦ୍ଭୁତ । ମୁହଁଗୁଡ଼ିକ ଖୁବ୍ ବଡ଼ ବଡ଼, ହାତଗୋଡ଼ କିଛି ନାହିଁ । ଏହି ମୂର୍ତ୍ତିଗୁଡ଼ିକ ଦ୍ୱୀପର ଭିତରଆଡ଼କୁ ମୁହଁ କରି ଠିଆ ହୋଇଛନ୍ତି । ମୂର୍ତ୍ତିଗୁଡ଼ିକ ଦେଖିବାକୁ ପୂରାପୂରି ସମାନ । ଏହି ମୂର୍ତ୍ତିଗୁଡ଼ିକୁ ସେଠାକାର ଲୋକେ 'ମଇ' ବୋଲି କହନ୍ତି । ଏହି ମୂର୍ତ୍ତି ଭିତରୁ ଶହେଟିର ଆଖି ପୂରା ତିଆରି ହୋଇନି, ଅଧା ତିଆରି ହୋଇ ପଡ଼ିଛି । ଏହିସବୁ ମୂର୍ତ୍ତି ଦ୍ୱୀପର ସମୁଦ୍ର ଉପକୂଳରେ ଧାଡ଼ି ହୋଇ ପରସ୍ପରଠାରୁ ଛଡ଼ା ଛଡ଼ା ହୋଇ ତିଆରି ହୋଇଛି । ଏହି ଉପକୂଳରେ କେଉଁଠି ଗୋଟିଏ ସୁଦ୍ଧା ଗଛବୃକ୍ଷ ନାହିଁ ।



ଇଷ୍ଟର ଦ୍ୱୀପର ପଥର ମୂର୍ତ୍ତି

ଏହି ମୂର୍ତ୍ତିଗୁଡ଼ିକୁ କିଏ ତିଆରି କରିଛି, ଏଗୁଡ଼ିକ ଏଠାକୁ କେମିତି ଆସିଲା, କହିବା କଷ୍ଟକର । କେତେକଙ୍କ ମତରେ ଏକ ଅଜଣା ସଭ୍ୟ ଜାତି ଦ୍ୱାରା ଏହା ନିର୍ମିତ ହୋଇଥିଲା । ଏବେ ସେ ଜାତି ପୃଥିବୀରୁ ଲୋପ ପାଇଯାଇଛି । କେତେକଙ୍କ ମତରେ ଏହି ଦ୍ୱୀପରେ 'ଅଦରସ୍' ନାମକ ଜାତି ବାସ କରୁଥିଲେ । ସେମାନେ ହଳଦିଆ ବର୍ଣ୍ଣର । ସେମାନଙ୍କ ହାତଗୋଡ଼ ଲମ୍ବା ଲମ୍ବା । ସେମାନେ ଖୁବ୍ ବଳଶାଳୀ । ସେମାନେ ବଡ଼ ବଡ଼ ପଥରଖଣ୍ଡ, କାଠ-ତିଆରି ସ୍ଲେଜ୍‌ଗାଡ଼ି ଦ୍ୱାରା ବହୁଦୂରରୁ ଆଣି ଏଠାରେ ପକାଇଥିଲେ । ଏଥିରେ ମୂର୍ତ୍ତିସବୁ ଗଢ଼ା ହୋଇଥିଲା । ସେତେବେଳେ ସେ ଦ୍ୱୀପରେ ଜଣେ ରାଜା ଥିଲେ । ତାଙ୍କ ନାଁ ହେଉଛି ହାନାଉ-ଏପ୍ । ଏହା ୧୧୧୦ ଠାରୁ ୧୬୫୦ ମସିହା ଭିତର କଥା । ଆଉ କେତେକଙ୍କ ମତରେ ଏହି ଦ୍ୱୀପରେ ବାସ କରୁଥିବା ପଲିନେସିଆନ୍‌ମାନେ ଏହି ମୂର୍ତ୍ତିର

ସ୍ରଷ୍ଟା । ସେମାନେ ଏକ ସମୟରେ ଏହି ଦ୍ୱୀପରେ ବସବାସ କରୁଥିଲେ । ସେମାନଙ୍କ ସଂଖ୍ୟା ସେତେବେଳେ କୋଡ଼ିଏହଜାର ଥିଲା । ଆଉ କେତେକଙ୍କ ମତରେ ବହୁଦିନ ତଳେ ଏହି ଇଷ୍ଟର ଦ୍ୱୀପ ଏକ ବଡ଼ ଦ୍ୱୀପ ଥିଲା । ଏଥିରେ ସୁସଭ୍ୟ ଏକ ଜାତି ବସବାସ କରୁଥିଲେ । ସେମାନେ ଏହି ମୂର୍ତ୍ତିଗୁଡ଼ିକ ତିଆରି କରିଥିଲେ । ଭୂମିକମ୍ପ ହେତୁ ଏହି ଦ୍ୱୀପର ଏକ ବଡ଼ ଅଂଶ ବୁଡ଼ିଯାଇ ସମୁଦ୍ର ତଳକୁ ଚାଲିଗଲା । ବାକୀ ଯାହା ରହିଲା, ତାହା ହେଉଛି ବର୍ତ୍ତମାନର ଇଷ୍ଟର ଦ୍ୱୀପ । ଏହି ମୂର୍ତ୍ତିଗୁଡ଼ିକ ସେହି ବଡ଼ ଦ୍ୱୀପର ଅଧିବାସୀଙ୍କ କୃତି ।

## ପ୍ରକୃତି-ଜଗତର ସପ୍ତାଶ୍ଚର୍ଯ୍ୟ

୧. ଆମେରିକାର ୱାଇୟୋମିଙ୍ଗ ରାଜ୍ୟରେ ଥିବା ୟଲୋ ଷ୍ଟନ ଜାତୀୟ ଉଦ୍ୟାନର ଓଲଡ୍ ଫେଥଫୁଲ ଗେସୟର ବା ଉର୍ଦ୍ଧ୍ୱକ୍ଷେପୀ ଉଷ୍ଣ ପ୍ରସ୍ରବଣ

୨. ଇଉଟାରାଜ୍ୟରେ ଥିବା ପ୍ରକୃତି-କୃତ ଇନ୍ଦ୍ରଧନୁ ସେତୁ

୩. ଆଟଲାଣ୍ଟିକ ମହାସାଗରରେ ଥିବା ଉଷ୍ଣ ଗଲ୍‌ଫ ସ୍ରୋତ

୪. କାଲିଫର୍ଣ୍ଣିଆ ରାଜ୍ୟର ରେଡ୍ ଉଡ୍ ବୃକ୍ଷ

୫. ଯୁକ୍ତରାଷ୍ଟ୍ର କାନାଡ଼ା ସୀମାରେ ଥିବା ନାଏଗ୍ରା ଜଳପ୍ରପାତ

୬. ଉତ୍ତରମେରୁ ଠାରେ ରାତ୍ରିରେ ଦିଶୁଥିବା ମେରୁ ଆଲୋକ

୭. ଫ୍ଲୋରିଡ୍ ନିକଟବର୍ତ୍ତୀ ବରମୁଡ଼ାର ମୃତ୍ୟୁ-ତ୍ରିଭୁଜ

# ଓଲଡ଼୍ ଫେଥ୍‌ଫୁଲ୍ ଉଷ୍ଣ ପ୍ରସ୍ରବଣ

ଆମେରିକା ଆକାର ଦୃଷ୍ଟିରୁ ପୃଥିବୀର ଏକ ବୃହତ୍ତମ ଦେଶ । ସେହି ଦେଶରେ ବହୁତ ଜାତୀୟ ଉଦ୍ୟାନ ରହିଛି । ସେହିସବୁ ଜାତୀୟ ଉଦ୍ୟାନ ଭିତରୁ ୟଲୋଷ୍ଟୋନ୍ ଜାତୀୟ ଉଦ୍ୟାନ ଗୋଟିଏ । ଏହା ଆମେରିକାର ଉତ୍ତର-ପଶ୍ଚିମାଞ୍ଚଳରେ ଥିବା ୱାଇୟୋମିଙ୍ଗ ରାଜ୍ୟରେ ଅବସ୍ଥିତ । ଏହା ଏହି ରାଜ୍ୟର ଉତ୍ତର-ପଶ୍ଚିମ କୋଣରେ ରହିଛି । ଏହି ଉଷ୍ଣ ପ୍ରସ୍ରବଣଟି ସାଧାରଣ ଉଷ୍ଣ ପ୍ରସ୍ରବଣ ପରି ନୁହେଁ । ସାଧାରଣ ଉଷ୍ଣ ପ୍ରସ୍ରବଣରେ କେବଳ ଗରମ ଜଳ ଭୂମିତଳୁ ଫୁଟି ବାହାରେ, ସେଥିସହ କେତେକ ଗ୍ୟାସ ମିଶିଥାଏ । ଆମ ଖୋର୍ଦ୍ଧାର ଅତ୍ରିଠାରେ ଯେଉଁ ଉଷ୍ଣ ପ୍ରସବଣ ଅଛି, ସେଥିରୁ କେବଳ ଗରମପାଣି ଓ ଗରମପାଣି ସହିତ ମିଶି ସଲ୍‌ଫରଡାଇଅକ୍‌ସାଇଡ଼ ଗ୍ୟାସ ବାହାରେ । କିନ୍ତୁ ଏହି ଜାତୀୟ ଉଦ୍ୟାନରେ ଯେଉଁ ଉଷ୍ଣ ପ୍ରସ୍ରବଣ ଅଛି, ସେଥିରେ ଗରମପାଣି ଏକ ଗେସୟର ଭଳି ଉପରକୁ ଉଠେ । ଏହି ଗେସୟରର ନାଁ ହେଉଛି ଓଲ୍‌ଡ଼୍ ଫେଥ୍‌ଫୁଲ । ଏହି ଗେସୟରର ଏକ ବିଶିଷ୍ଟ ଗୁଣ ହେଉଛି ଏଥିରେ ଉଷ୍ଣଜଳ ଏକ ନିର୍ଦ୍ଦିଷ୍ଟ ସମୟ ଅନ୍ତରରେ ଉପରକୁ ଉଠେ । ଏହା ଭୂଇଁଠାରୁ ହାରାହାରି ୧୪୦ଫୁଟ ଉଚ୍ଚକୁ ଉଠେ । ଥରକେ ଏଥିରୁ ୪୫୫୦୦ଲିଟର ପାଣି ବାହାରିଆସେ । ଏହା ସବୁବେଳେ ଉପରକୁ ଉଠେନି । ପ୍ରତି ୬୫ ମିନିଟରେ ଥରେ ଲେଖାଏଁ ଏହା ଉପରକୁ ଉଠେ ଓ ଚାରିମିନିଟ ପର୍ଯ୍ୟନ୍ତ ପାଣି ଉପରକୁ ଉଠିବା ରହି ଧୀରେ ଧୀରେ କମି କମି ଶେଷରେ ପୂରାପୂରି ଲୋପ ପାଇଯାଏ । ପୁଣି ୬୫ ମିନିଟ୍ ପରେ ଆରମ୍ଭ ହୁଏ । ଏହା ପ୍ରତି ୬୫ ମିନିଟ୍ ପରେ ଅତି ବିଶ୍ୱସ୍ତ ଭାବରେ ଉପରକୁ ଉଠୁଥିବାରୁ ଏହାର ନାମକରଣ ହୋଇଛି ଓଲ୍‌ଡ଼୍ ଫେଥ୍‌ଫୁଲ । ପୁରାକାଳର ଲୋକେ ଏହାର କାରଣ ଜାଣି ନ ଥିବାରୁ ଏହାକୁ ଏକ ଆଶ୍ଚର୍ଯ୍ୟଜନକ ବସ୍ତୁ ବୋଲି ଭାବୁଥିଲେ । ପୁରାକାଳର ଲୋକେ ଜାଣିପାରୁ ନ ଥିଲେ, ଏହା କେମିତି ଏଭଳି ହେଉଛି ? ଏହାର ଆବିଷ୍କାରକ ହେଉଛନ୍ତି ନାଟ୍ ଲେଙ୍ଗଫୋର୍ଡ଼ ।



ଓଲ୍ଡ ଫେଥ୍‌ଫୁଲ ଉଷ୍ଣ ପ୍ରସ୍ରବଣ

ଆଧୁନିକ ବୈଜ୍ଞାନିକମାନେ ଗବେଷଣା କରି ଜାଣିପାରିଛନ୍ତି, ଏହାର କାରଣ କ'ଣ ଓ ଏହା କେମିତି ଏଭଳି ହେଉଛି । କୌଣସି କାରଣବଶତଃ ପୃଥିବୀ-ପୃଷ୍ଠରେ ଏକ ଅତି ଗହୀରିଆ ଫାଟ ସୃଷ୍ଟି ହୋଇ ପୃଥିବୀ-ପୃଷ୍ଠଠାରୁ ପୃଥିବୀ ଅଭ୍ୟନ୍ତରସ୍ଥ ଉତ୍ତପ୍ତ ଶିଳା ପର୍ଯ୍ୟନ୍ତ ଏକ ନଳୀ ଭାବରେ ଲମ୍ବିଯାଇଛି । ପୃଥିବୀର ମାଟି ତଳେ ତ ଜଳର ଆସ୍ତରଣ ରହିଛି । ଏଥିରୁ ଜଳ

ଝରିଯାଇ ସେହି ଉତ୍ତପ୍ତ ଶିଳା ପର୍ଯ୍ୟନ୍ତ ସେହି ନଳୀବାଟେ ଚାଲିଯାଉଛି ଓ ସେହି ନଳୀର ପୂରା ଅଂଶଟା ସେହି ଭୂମିତଳ ଜଳରେ ଭର୍ତ୍ତି ହୋଇଯାଉଛି । ଉତ୍ତପ୍ତ ଶିଳା ସଂସ୍ପର୍ଶରେ ଯେଉଁ ଜଳ ଆସୁଛି, ତାହା ଉତ୍ତପ୍ତ ବାଷ୍ପ ହୋଇ ନଳୀର ଜଳକୁ ଉପରକୁ ଠେଲି ତା'ର ସ୍ଥାନ ଅଧିକାର କରି ରହୁଛି । ଧୀରେ ଧୀରେ ଅଧିକ ଜଳ ସେହି ଉତ୍ତପ୍ତ ଶିଳା ସଂସ୍ପର୍ଶରେ ଆସି ଅଧିକରୁ ଅଧିକ ବାଷ୍ପରେ ପରିଣତ ହେଉଛି । ଯେତେବେଳେ ଏହି ସୃଷ୍ଟି ହେଉଥିବା ବାଷ୍ପର ଚାପ ନଳୀରେ ଥିବା ଜଳର ଚାପ ଅପେକ୍ଷା ଅଧିକ ହେଉଛି, ଏହି ପାଣି ପୃଥିବୀ ପୃଷ୍ଠରୁ ଉପରକୁ ଠେଲି ହୋଇ ଉଠୁଛି । ଯେତେବେଳେ ନଳୀରେ ଥିବା ସମସ୍ତ ଜଳ ଏହି ଗେସୟର ଭାବରେ ବାହାରିଯାଉଛି, ଏହି ଜଳ ଉପରକୁ ଉଠିବା ବନ୍ଦ ହୋଇଯାଉଛି । ଏହି ନଳୀରେ ଥିବା ଜଳ ଚାରିମିନିଟ୍ ପର୍ଯ୍ୟନ୍ତ ବାହାରୁଛି । ପୁଣି ପର ୬୫ ମିନିଟରେ ଜଳ ସେହି ନଳୀରେ ସଂଗୃହୀତ ହେଉଛି ଓ କିଛି ଜଳ ଉତ୍ତପ୍ତ ଶିଳା ସଂସ୍ପର୍ଶରେ ଆସି ବାଷ୍ପୀଭୂତ ହେଉଛି । ଏହିଭଳି ଭାବରେ ଏହି କ୍ରିୟା କ୍ରମାଗତ ଭାବରେ ଆବହମାନ କାଳରୁ ଚାଲି ଆସୁଛି । ଏହା କେବେ ବନ୍ଦ ହେଉନି । ବୈଜ୍ଞାନିକମାନେ କହୁଛନ୍ତି, କିଛିଦିନ ପରେ ଏହି ଉତ୍ତପ୍ତ ଶିଳା ଥଣ୍ଡା ହୋଇଯିବ, ଫଳରେ ଗେସୟର ଦିନକୁ ମାତ୍ର ଥରେ ଲେଖାଏଁ ବାହାରିବ । ଏହାର କିଛିଦିନ ପରେ ମାସକୁ ଥରେ, ପରେ ବର୍ଷକୁ ଥରେ ଲେଖାଏଁ ହୋଇ ଦିନେ ପୂରାପୂରି ବନ୍ଦ ହୋଇଯିବ ।

ଏହି ପାର୍କରେ ଆଉ ଏକ ଗେସୟର ଅଛି, ଯେଉଁଥିରେ ଜଳ ଅଧିକ ଉପରକୁ ଉଠେ । ଏହା ହାରାହାରି ଅଢ଼େଇଶହ ଫୁଟ ପର୍ଯ୍ୟନ୍ତ ଉପରକୁ ଉଠେ । ଏହା ହେଉଛି ପୃଥିବୀର ଉଚ୍ଚତମ ଗେସୟର, ହେଲେ ଏହା ଓଲଡ୍ ଫେଥ୍‌ଫୁଲ୍ ଭଳି ପ୍ରତି ୬୫ ମିନିଟରେ ଥରେ ନ ହୋଇ ପ୍ରତି ତିନି ସପ୍ତାହରେ ଥରେ ଲେଖାଏଁ ଜଳ ଉପରକୁ ଉଠେ । ଏହି ଗେସୟରଗୁଡ଼ିକର ସୌନ୍ଦର୍ଯ୍ୟ ଦେଖି ଯୁକ୍ତରାଷ୍ଟ୍ର ସରକାର ୧୮୭୨ ମସିହାରେ ଏହିଠାରେ ଥିବା ୮୬୮୦ ବର୍ଗକିଲୋମିଟର ସ୍ଥାନକୁ ୟଲୋଷ୍ଟୋନ ଜାତୀୟ ଉଦ୍ୟାନ ଭାବରେ ପ୍ରତିଷ୍ଠା କଲେ ଓ ଏହାର ପ୍ରଥମ ଆବିଷ୍କାରକ ନାଟ୍ ଲେଙ୍ଗ୍‌ଫୋର୍ଡ଼ ଏହାର ସର୍ବପ୍ରଥମ ସୁପରିଣ୍ଟେଣ୍ଡେଣ୍ଟ ହୋଇଥିଲେ ।

# ପ୍ରକୃତିକୃତ ଇନ୍ଦ୍ରଧନୁ ସେତୁ

ପ୍ରକୃତି ଯେ ବେଳେବେଳେ ସେତୁ ତିଆରି କରିପାରେ, ଏହାହିଁ ହେଉଛି ଆଧୁନିକ ଯୁଗର ଆଶ୍ଚର୍ଯ୍ୟ । ସେହିଭଳି କେତୋଟି ସେତୁ ଆମେରିକାରେ ଅଛି । ସେଥି ଭିତରୁ ଗୋଟିଏ ପ୍ରକୃତିକୃତ ସେତୁ ଆମେରିକାର ଇଉଟା ରାଜ୍ୟରେ ଅବସ୍ଥିତ । ଏହାର ନାମ ହେଉଛି ଇନ୍ଦ୍ରଧନୁ ସେତୁ । ଇଉଟା ରାଜ୍ୟଟି ଏକ ପାହାଡ଼ିଆ ରାଜ୍ୟ । କୌଣସି ଗୋଟିଏ ପାହାଡ଼ର ଉପର ଅଂଶ ଟାଣ ଥାଇ ତଳ ଅଂଶରୁ ପଥର, ମାଟି ଚାଲିଯାଇ ଏହି ପୋଲଟି ତିଆରି ହୋଇଛି ।



ପ୍ରକୃତିକୃତ ଇନ୍ଦ୍ରଧନୁ ସେତୁ

ଅତି ପୁରାତନ ଯୁଗରେ ପବନ ଓ ବାଲିକଣିକାର ଆଘାତରେ ଗୋଟିଏ ପାହାଡ଼ର ମଧଭାଗରେ ଥିବା ଦୁର୍ବଳ ଅଂଶ ଝଡ଼ି ଝଡ଼ି ଏହି ଶୂନ୍ୟସ୍ଥାନ ତିଆରି ହୋଇଛି । ଉପର ଅଂଶଟି ଖୁବ୍ ଟାଣ ଥିବାରୁ ପବନ ଓ ବାୟୁର ଆଘାତରେ ନଷ୍ଟ ହୋଇନି । ଫଳରେ ଉପରେ ଏକ ପୋଲ

ଭଳି ରହିଯାଇଛି । ଏହି ସେତୁଟିର ଉଚ୍ଚତା ୩୦୦ ଫୁଟ । ଏହା ତଳେ ଗୋଟିଏ ୨୫ ତାଲା କୋଠା ରହିଯାଇ ପାରିବ । ସେତୁର ଲମ୍ବ ୨୮୦ ଫୁଟ, ଓସାର ୩୧ ଫୁଟରୁ ୫୩ ଫୁଟ ଭିତରେ । ଏହା ଏତେ ଟାଣ ଓ ଶକ୍ତ ଯେ, ଏହା ଉପରେ ଭାରୀ ଟ୍ରକ ଯଦି ଯାଏ, ଏହା ମୋଟେ ଭାଙ୍ଗିବନି । ପବନ ଓ ବାଲିଝଡ଼ କେମିତି ଗୋଟିଏ ପର୍ବତକୁ ଖାଇ ଖାଇ ଭିତରକୁ ଫମ୍ପା କରିଦିଏ, ଏହି ଇନ୍ଦ୍ରଧନୁ ସେତୁ ଏହାର ପ୍ରମାଣ ।

ଏତଦ୍‌ବ୍ୟତୀତ ଏହି ରାଜ୍ୟରେ ଆଉ ଦୁଇଟି ସେହିଭଳି ପ୍ରକୃତିକୃତ ସେତୁ ରହିଛି । ସେମାନଙ୍କର ନାମ କଚିନା ଓ ଓ୍ୱୋକମ୍ ସେତୁ । ପ୍ରଥମଟି ୨୧୦ ଫୁଟ ଉଚ୍ଚ ଓ ଦ୍ୱିତୀୟଟି ୧୦୦ ଫୁଟ ଉଚ୍ଚ । ଭାରଜିନିଆ ରାଜ୍ୟରେ ସେହିଭଳି ଆଉ ଗୋଟିଏ ପ୍ରାକୃତିକ ସେତୁ ରହିଛି । ଏହାର ଉଚ୍ଚତା ୨୧୫ ଫୁଟ ଓ ଲମ୍ବ ୧୦୦ ଫୁଟ । କେତେକ ପାର୍ବତୀୟ ଗୁମ୍ଫା ଭିତରେ ନଈ ବହିଯାଇ ଗୁମ୍ଫାକୁ ଫମ୍ପା କରିଦେଇ ଏହି ପ୍ରାକୃତିକ ସେତୁ ସୃଷ୍ଟି କରିଛି ।

# ସମୁଦ୍ର ଭିତରେ ନଈ

ଏହି କଥାଟି ଶୁଣିବାକୁ ବିଶେଷ ଅଦ୍ଭୁଆ ଲାଗୁଥିବ । ସମୁଦ୍ର ଭିତରେ ନଈ । ଏହା କେମିତି କଥା ? ସମୁଦ୍ର ଭିତରେ ପୁଣି ନଈ କେମିତି ହବ ? ନଈ ସିନା ସ୍ଥଳଭାଗରେ ଥାଏ, ଜଳଭାଗ ଭିତରେ ନଈଟାଏ କାହୁଁ ଆସିବ ? ସମୁଦ୍ର ଭିତରେ ନଈ ଅସମ୍ଭବ କଥା ନୁହେଁ, ଏହା ବାସ୍ତବିକ ସତ କଥା । ସମସ୍ତେ ଭାବୁଥିଲେ ସମୁଦ୍ର ତ ଜଳଭାଗ, ସେଥି ଭିତରେ ନଈ ବହିବ କେମିତି ? ସମୁଦ୍ର ଜଳ କ'ଣ ନଈ ଜଳ ସହିତ ମିଶି ଏକାକାର ହୋଇଯାଉ ନ ଥିବ ? ସେଥି ଭିତରୁ ନଈ ସମୁଦ୍ର ବାରିହେବ କେମିତି ? ସେ ପରିସ୍ଥିତିରେ ସମୁଦ୍ର ଭିତରେ ନଈ ଥିବା କଥା ଆମେ କେମିତି କହିବା ?

ସମୁଦ୍ର ଭିତରେ ଯେଉଁ ନଈ ଥିବା କଥା କୁହାଗଲା, ଏ ନଈ ସାଧାରଣ ସ୍ଥଳଭାଗର ନଈ ଭଳି ନୁହେଁ । ସମୁଦ୍ର ଜଳ ଥଣ୍ଡା ଥିବା ସ୍ଥଳେ ଏହି ନଈର ଜଳ ବେଶ୍ ଗରମ । ଏହି ନଈର ପ୍ରଥମ ଚାରିଶହ ମାଇଲର ଜଳ ଏତେ ଗରମ ଯେ, ଏଥିରେ ହାତ ପୂରାଇଲେ ହାତକୁ ବେଶ୍ ଗରମ ଲାଗିବ । ଏହାର ତାପମାନ ହେଉଛି ୮୦ ଡିଗ୍ରୀ ଫାରେନ୍‌ହିଟ୍ । ହଜାରେ ମିସିସିପି ନଦୀର ପ୍ରବଳତା ସହିତ ଏହି ନଈର ପ୍ରବଳତା ସମାନ । ଏହା ସମୁଦ୍ର ଭିତରେ ପ୍ରାୟ ୬୦୦୦ ମାଇଲ ଗତି କରୁଛି ଓ ଏହି ନଈଯୋଗୁଁ ମେରୁ ତୁଷାର ଅଞ୍ଚଳର ଦେଶମାନଙ୍କରେ ଶୀତର ପ୍ରକୋପ ସେତେ ରହେ ନାହିଁ । ପ୍ରକୃତରେ କହିବାକୁ ଗଲେ ଏହି ନଈଟି ହେଉଛି ସର୍ବଜନବିଦିତ ଆଟଲାଣ୍ଟିକ ମହାସାଗରର ଗଲ୍‌ଫ ସମୁଦ୍ର ସ୍ରୋତ ।

ସାରା ପୃଥିବୀରେ ଯେତେ କୋଇଲା, ପେଟ୍ରୋଲିୟମ, କାଠ ଆଦି ଜାଳେଣି ଅଛି, ସବୁ ଜାଳେଣିକୁ ଏକସଙ୍ଗେ ଜାଳିଲେ ଯେତେ ତାପଶକ୍ତି ଉତ୍ପାଦିତ ହେବ, ତାଠାରୁ ଢେର୍ ଅଧିକ ତାପଶକ୍ତି ଏହି ଗଲ୍‌ଫ-ସ୍ରୋତର ଜଳରେ ନିହିତ ଅଛି । ଏତେ ତାପଥିବା ଏହି ସ୍ରୋତଟି ଲକ୍ଷ ଲକ୍ଷ ବର୍ଷ ହେଲା ଗତି କରି ଚାଲିଛି ।



ଗଲ୍ଫ ସ୍ରୋତ

ଏହି ଗଲ୍ଫ-ସ୍ରୋତ ବର୍ତ୍ତମାନ ଯେଉଁ ରୀତିରେ ଗତି କରୁଛି, ମୂଳରୁ ଏହା ସେମିତି ନ ଥିଲା । ଦିନ ଥିଲା, ଯେତେବେଳେ ଏହି ସ୍ରୋତ ଆଟଲାଣ୍ଟିକ ମହାସାଗରରୁ ପ୍ରଶାନ୍ତ ମହାସାଗରକୁ ପ୍ରବାହିତ ହେଉଥିଲା । ପାନାମା ପାଖରେ ସମୁଦ୍ର ଭିତରେ ଏକ ପର୍ବତ ସୃଷ୍ଟି ହେବାରୁ ଏହାର ଗତି ବର୍ତ୍ତମାନ ଅବସ୍ଥାକୁ ବଦଳିଗଲା । ବର୍ତ୍ତମାନ ଏହି ସ୍ରୋତ ଯୁକ୍ତରାଷ୍ଟ୍ରର ଦକ୍ଷିଣରେ ଥିବା ସାଗରରୁ ବାହାରି ଉତ୍ତରମୁହାଁ ହୋଇ ନିଉଫାଉଣ୍ଡଲାଣ୍ଡ ପର୍ଯ୍ୟନ୍ତ ଯାଇଛି । ଏଠାରେ ଲାବ୍ରାଡର ଶୀତଳ ସ୍ରୋତଦ୍ୱାରା ବାଧା ପାଇ ଏହାର ଗତି ପୂର୍ବ ଦିଗକୁ ହୋଇଛି । ବାଧା ପାଇବା ସ୍ଥାନରେ ଉଷ୍ଣ ଓ ଶୀତଳ ସ୍ରୋତର ଧକ୍କା ଫଳରେ ବିରାଟ ଆକାରର ଘନ କୁହୁଡ଼ି ସେହି ସମୁଦ୍ର ଭିତରେ ସଦାସର୍ବଦା ଲାଗି ରହିଥିବାର ଦେଖାଯାଏ । ଏହା ପୂର୍ବ ଦିଗକୁ ଯାଇ ପଶ୍ଚିମ ଇଉରୋପକୁ ଅତିକ୍ରମ କରି ସ୍କାଣ୍ଡିନେଭିଆ ପର୍ଯ୍ୟନ୍ତ ଯାଇଛି ।

ଏହି ସ୍ରୋତର ବର୍ଣ୍ଣ ଗାଢ଼ ନୀଳବର୍ଣ୍ଣ ଥିବାରୁ ଏହାକୁ ସମୁଦ୍ରର ସାଧାରଣ ଜଳରାଶିଠାରୁ ପୃଥକ୍ ଜାଣି ହୁଏ । ଏହି ସ୍ରୋତର ଦୁଇ ପାଖରେ ଥିବା ଜଳରାଶିର ତାପକ୍ରମଠାରୁ ଏହି ସ୍ରୋତର ତାପକ୍ରମ ଅଧିକ ।

ଯୁକ୍ତରାଷ୍ଟ୍ରର ପୂର୍ବାଞ୍ଚଳ ସମୁଦ୍ରର ତାପକ୍ରମ ୩୪ ଡିଗ୍ରୀ ଫାରେନ୍‌ହିଟ୍ ଥିଲାବେଳେ ଏହି ସ୍ରୋତର ତାପକ୍ରମ ୫୬ ଡିଗ୍ରୀ ଫାରେନ୍‌ହିଟ୍ । ଏହି ଉଷ୍ଣ ସ୍ରୋତ ଯୋଗୁ ଫ୍ଲୋରିଡ଼ାରେ ଶୀତଦିନେ ଶୀତ ନ ହୋଇ ଗରମ ହୁଏ ।

ଏହି ଗଲ୍‌ଫ ସ୍ରୋତ ଇଉରୋପର ଉତ୍ତର ପଶ୍ଚିମ ଅଞ୍ଚଳକୁ ଉଷ୍ଣ ରଖିବା ହେତୁ ନରୱେରେ ଏହାର ଏହି ଉଷ୍ଣକାରୀ ପ୍ରଭାବ ଅନୁଭୂତ ହୁଏ । ନରୱେର ହାମରଫାଷ୍ଟ ବନ୍ଦର ବର୍ଷର ସବୁଦିନେ ବ୍ୟବହାର ଉପଯୋଗୀ ହୁଏ, କାରଣ ଏଠାରେ ସମୁଦ୍ର କେତେବେଳେ ବରଫାଚ୍ଛାଦିତ ହୁଏନି । କିନ୍ତୁ ସୋଭିଯେତ୍ ଇଉନିୟନର ରୀଗା ଏହାର ୮୦୦ ମାଇଲ ଦକ୍ଷିଣରେ ଥାଇ ମଧ୍ୟ ଏଠାରେ ଜାହାଜ ଚଳାଚଳ ହୁଏନି, କାରଣ ଏଠାକାର ସମୁଦ୍ର ଶୀତଦିନେ ବରଫାଚ୍ଛାଦିତ ହୋଇଯାଇଥାଏ । ଏହି ସ୍ରୋତ ଯୋଗୁ ଗ୍ରୀନ୍‌ଲ୍ୟାଣ୍ଡରେ ମଧ୍ୟ ବେଶି ଥଣ୍ଡା ହୁଏନି ।

# କାଲିଫର୍ଣ୍ଣିଆରେ ରେଡ୍‌ଉଡ୍ ବୃକ୍ଷ

କାଲିଫର୍ଣ୍ଣିଆ ରାଜ୍ୟର ରେଡ୍‌ଉଡ୍ ବୃକ୍ଷର ବଣ ପୃଥିବୀ-ପ୍ରସିଦ୍ଧ । ଏଠାକାର ବୃକ୍ଷ ଯେମିତି ଉଚ୍ଚା, ସେମିତି ମୋଟା ଓ ସେମିତି ଅଧିକ



ରେଡ୍‌ଉଡ୍‌ର ବିରାଟ ବୃକ୍ଷ, ଗଛ ଭିତର ଦେଇ ରାସ୍ତା ଯାଇଛି

ଦିନ ବଞ୍ଚେ । ଏହି ବଣରେ ଏମିତି ରେଡ଼୍‌ଉଡ଼୍ ବୃକ୍ଷ ରହିଛି, ଯାହାର ବୟସ ୩୦୦୦ ବର୍ଷଠାରୁ ଅଧିକ । କଥାରେ ଅଛି, ମହାଭାରତ ଯୁଦ୍ଧବେଳରେ ଜନ୍ମିଥିବା ରେଡ଼୍‌ଉଡ଼୍ ବୃକ୍ଷ ଏବେ ବି ସେ ଜଙ୍ଗଲରେ ବଞ୍ଚି ଠିଆ ହୋଇଛି । ବଡ଼ ବଡ଼ ରେଡ଼୍‌ଉଡ଼୍ ଗଛର ଉଚ୍ଚତା ୩୬୪ ଫୁଟ ଠାରୁ ଅଧିକ । ଏହା ୩୦/୩୫ ତାଲା କୋଠାଘରର ଉଚ୍ଚତା ଠାରୁ ଅଧିକ । ଏହାର ମୋଟେଇ ଏତେ ଅଧିକ ଯେ, ଏହାର ମୂଳ ଭିତର ଦେଇ ଚଉଡ଼ା ରାସ୍ତା ଯାଇଛି, ଯେଉଁ ରାସ୍ତାରେ ବଡ଼ ବଡ଼ ଟ୍ରକ, ମଟର, ବସ୍ ଆଦି ଅନାୟାସରେ ଯାତାୟାତ କରିପାରେ । କାଲିଫର୍ଣ୍ଣିଆରେ ଏମିତି ଏକ ବିରାଟ ଗଛ ଅଛି, ଯାହା ମଧ୍ୟଦେଇ ୩୦ ଫୁଟ ଚଉଡ଼ା ଏକ ବଡ଼ ରାସ୍ତା ଯାଇଛି । ଏହି ରାସ୍ତା ମଧ୍ୟଦେଇ ଦିନରାତି ଶହ ଶହ ଯାନବାହନ ଚାଲିଛି । ଏହି ଗଛଟି କାଲିଫର୍ଣ୍ଣିଆର ରେଡ଼୍‌ଉଡ଼୍ ବଣ ଭିତରେ ଅବସ୍ଥିତ ।

# ନାଏଗ୍ରା ଜଳପ୍ରପାତ

ସାରା ପୃଥିବୀରେ ଯେତେ ଜଳପ୍ରପାତ ଅଛି, ସବୁଠାରୁ ସୁନ୍ଦର ତଥା ଆଶ୍ଚର୍ଯ୍ୟତମ ହେଉଛି ଏହି ନାଏଗ୍ରା ଜଳପ୍ରପାତ । ଏହା ଯୁକ୍ତରାଷ୍ଟ୍ର ଆମେରିକାର ଉତ୍ତର ସୀମାରେ ଅବସ୍ଥିତ । ଯେଉଁଠି ଯୁକ୍ତରାଷ୍ଟ୍ର ଓ କାନାଡ଼ା ପରସ୍ପରକୁ ଲଗାଲଗି ହୋଇ ସୀମାନ୍ତ ସୃଷ୍ଟି କରିଛନ୍ତି, ସେହି ସୀମାନ୍ତର ପୂର୍ବ ଅଞ୍ଚଳରେ ଏହି ଜଳପ୍ରପାତ ଅବସ୍ଥିତ । ନାଏଗ୍ରା ହେଉଛି ଆମେରିକାର ଆଦିମ ଆଦିବାସୀ ଲୋହିତ ଭାରତୀୟମାନଙ୍କ ଭାଷାରେ ଏକ ଶବ୍ଦ, ଯାହାର ଅର୍ଥ ହେଉଛି ଜଳର ଗର୍ଜନ । ପ୍ରକୃତରେ ନାଏଗ୍ରା ଜଳପ୍ରପାତ ନିକଟକୁ ଗଲେ ପ୍ରପାତର ଗର୍ଜନରେ କାନ ଅତଡ଼ା ପଡ଼ିଯାଏ । ଏହି ଜଳପ୍ରପାତଟି ଯେଉଁ ନଦୀରେ ଅବସ୍ଥିତ, ସେହି ନଈଟିର ନାଁ ମଧ୍ୟ ନାଏଗ୍ରା ନଦୀ । ଯୁକ୍ତରାଷ୍ଟ୍ରର ଉତ୍ତର ଭାଗରେ ଦେଖିବାକୁ ସମୁଦ୍ରଭଳି ଯେଉଁ ପାଞ୍ଚଗୋଟି ବିରାଟ ବିରାଟ ହ୍ରଦ ଅଛି, ସେହି ହ୍ରଦରୁ ଏହି ନାଏଗ୍ରା ନଦୀର ଜନ୍ମ । ଏହି ପାଞ୍ଚଗୋଟି ହ୍ରଦ ହେଲା ସୁପିରିୟର ହ୍ରଦ, ମିଚିଗାନ ହ୍ରଦ, ହୁରନ ହ୍ରଦ, ଏରି ହ୍ରଦ ଓ ଅଣ୍ଟେରିଓ ହ୍ରଦ । ଏଥିଭିତରୁ ସୁପିରିୟର ହ୍ରଦର ଉଚ୍ଚତା ସର୍ବାଧିକ, ସମୁଦ୍ରପୃଷ୍ଠ ଠାରୁ ୬୨୦ ଫୁଟ ଉଚ୍ଚ । ଅନ୍ୟ ହ୍ରଦଗୁଡ଼ିକ ଏହାଠାରୁ କମ୍ ଉଚ୍ଚ । ତେଣୁ ଏହି ହ୍ରଦରେ ଯେଉଁ ଅଧିକା ପାଣି ସଂଗୃହୀତ ହୁଏ, ତାହା ଅନ୍ୟାନ୍ୟ ହ୍ରଦ ଦେଇ ବାହାରିଆସି ସେଣ୍ଟ୍ ଲରେନ୍ସ ନଦୀ ସହିତ ମିଶି ସମୁଦ୍ର ଭିତରକୁ ବହିଯାଏ । ପ୍ରତ୍ୟେକ ହ୍ରଦର ଅଧିକା ପାଣି ପରବର୍ତ୍ତୀ ହ୍ରଦ ଦେଇ ଯାଇଥାଏ । ଏହି ହ୍ରଦର ଅଧିକ ଜଳରାଶି ଅଣ୍ଟେରିଓ ହ୍ରଦ ସହିତ ମିଶିଥାଏ ନାଏଗ୍ରା ନଦୀ ଦେଇ । ଏହି ପାଞ୍ଚଗୋଟି ହ୍ରଦ ସମୁଦ୍ର ଭଳି ଦିଶିଲେ ହେଁ ଏହାର ଜଳ ଲୁଣିଆ ନୁହେଁ, ମିଠା । ଏହି ହ୍ରଦରେ ମଧୁରପାଣି ମାଛ ଦେଖାଯାନ୍ତି । ଏହି ନାଏଗ୍ରା ନଦୀ ଯେଉଁ ଶଯ୍ୟା ଉପରେ ଗତି କରୁଛି, ତାହା ଭିନ୍ନ ଭିନ୍ନ ସମତଳରେ ବିଭକ୍ତ ହୋଇଛି । ଉପର ତଳ ନିମ୍ନସ୍ଥ ତଳଠାରୁ ୨୦୦ ଫୁଟ ଉଚ୍ଚରେ । ତେଣୁ ନାଏଗ୍ରା ନଦୀର ଜଳ ନାଏଗ୍ରା ଫଲ୍ସଠାରେ ତଳସ୍ତର ଉପରକୁ ଖସି ପଡୁଛି ।



ନାଏଗ୍ରା ଜଳପ୍ରପାତ

ନାଏଗ୍ରା ଜଳପ୍ରପାତ ପ୍ରକୃତରେ ଦୁଇଟି ଜଳପ୍ରପାତ ଅଟେ । ସେଥିଭିତରୁ ଗୋଟିଏ ଆମେରିକା ସରକାରଙ୍କ ଅଧୀନରେ, ଅନ୍ୟଟି କାନାଡ଼ା ସରକାରଙ୍କ ଅଧୀନରେ । ପ୍ରଥମଟିର ନାଁ ଆମେରିକାନ୍ ଫଲ୍‌ସ ଓ ଦ୍ୱିତୀୟଟିର ନାଁ ହର୍ସସୁ ଫଲ୍‌ସ । ଏହା କାନାଡ଼ା ସରକାରଙ୍କର । ଏହି ହର୍ସସୁ ଫଲ୍‌ସଟି ଘୋଡ଼ାଖୁରା ଆକାରରେ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଛି । ନାଏଗ୍ରା ଜଳପ୍ରପାତର ଉଚ୍ଚତା ୧୬୭ ଫୁଟ ଓ ଏହା ପ୍ରତି ସେକେଣ୍ଡରେ ୭୦୦୦ ଟନ୍ ଜଳ ତଳକୁ ଖସାଇ ପକାଉଛି । ଏହି ଜଳ ତଳକୁ ଖସିପଡ଼ିବା ଫଳରେ ଯେଉଁ ଜଳକଣା ଉପରକୁ ଉଠୁଛି, ସେଥିରେ ଦିନବେଳେ ସୁନ୍ଦର ଇନ୍ଦ୍ରଧନୁ ଦେଖାଯାଏ । ନାଏଗ୍ରା ଜଳପ୍ରପାତର ଶଯ୍ୟା କଠିନ ପ୍ରସ୍ତର ଓ ତା' ତଳ ଶଯ୍ୟା ନରମ ପଥରର ହୋଇଥିବାରୁ ଏହି ପଥର ଧୀରେ ଧୀରେ ଖାଇଯାଉଛି ଓ ପରେ ପରେ ଉପର ପଥର ସ୍ତର ଭାଙ୍ଗିପଡୁଛି, ଫଳରେ ନାଏଗ୍ରା ଜଳପ୍ରପାତ ଧୀରେ ଧୀରେ ପଛକୁ ଘୁଞ୍ଚି ଯାଉଛି । ଏହା ଭିତରେ ନାଏଗ୍ରା ଜଳପ୍ରପାତ ସାତମାଇଲ ପଛକୁ ହଟିଗଲାଣି ।

ନାଏଗ୍ରା ଜଳପ୍ରପାତ ଦୁଇଟି ଅଂଶରେ ବିଭକ୍ତ ହେବାର କାରଣ ହେଉଛି, ନଦୀର ମଧ୍ୟଭାଗରେ ଥିବା ଗୋଟ୍ ଆୟର୍ଲାଣ୍ଡ ନାମକ ଏକ ଦ୍ୱୀପ । ଏହି ଦ୍ୱୀପଟି ନାଏଗ୍ରା ନଦୀର ଜଳକୁ ଦୁଇଭାଗରେ ବିଭକ୍ତ କରୁଛି । ପ୍ରଥମ ଭାଗର ଜଳ ଆମେରିକାନ ପ୍ରପାତଠାରୁ ତଳକୁ ଖସିପଡୁଛି ଓ ଦ୍ୱିତୀୟଟିର ଜଳ କାନାଡ଼ାର ହର୍ସସୁ ଜଳପ୍ରପାତଠାରେ ତଳକୁ ଖସିପଡୁଛି । ଏହା ଫଳରେ ନାଏଗ୍ରା ଠାରେ ଦୁଇଟି ପ୍ରପାତ ହେବା ସମ୍ଭବ ହୋଇଛି । ଏଥି ଭିତରୁ କାନାଡ଼ାର ପ୍ରପାତ ବଡ଼ ଓ ଅଧିକ ସୁନ୍ଦର । ଏହି ଜଳପ୍ରପାତ ଦେଖିବାକୁ ପୃଥିବୀର ସବୁଠୁଁ ଅଧିକସଂଖ୍ୟକ ଦର୍ଶକ ଏଠାକୁ ଆସନ୍ତି ଓ ସୌନ୍ଦର୍ଯ୍ୟରେ ଏହା ପୃଥିବୀର ସୁନ୍ଦରତମ ଜଳପ୍ରପାତ । ଏହି ଜଳପ୍ରପାତକୁ ଦେଖିବା ପାଇଁ ପ୍ରତିବର୍ଷ ହାରାହାରି ୨୦ ଲକ୍ଷ ଦର୍ଶକ ଏଠାକୁ ଆସନ୍ତି । କାନାଡ଼ାର ହର୍ସସୁ ପ୍ରପାତର ଉଚ୍ଚତା ୫୦ ମିଟର ଓ ଓସାର ୯୦୦ ମିଟର । କିନ୍ତୁ ଆମେରିକାନ ପ୍ରପାତର ଉଚ୍ଚତା ୫୨ ମିଟର ଓ ଚଉଡ଼ା ୩୦୦ ମିଟର ।

# ମେରୁ ଆଲୋକ

ପୃଥିବୀର ଉତ୍ତର ଓ ଦକ୍ଷିଣମେରୁ ଅଞ୍ଚଳର ଆକାଶରେ ରାତିରେ ଏକପ୍ରକାର ଆଲୋକ ଦେଖାଯାଏ । ଏହା ଉତ୍ତରମେରୁ ଆଲୋକ ଓ ଦକ୍ଷିଣମେରୁ ଆଲୋକ ଭାବରେ ପରିଚିତ । ଏଥି ଭିତରୁ ଉତ୍ତରମେରୁ ଆଲୋକ ବା ଇଂରାଜୀରେ ଅରୋରା ବୋରିଆଲିସ୍ ଦେଖିବାକୁ ଅତୀବ ସୁନ୍ଦର । ଏହି ଉତ୍ତରମେରୁ ଆଲୋକ ଉତ୍ତରମେରୁର ନିକଟବର୍ତ୍ତୀ ରାଜ୍ୟ ଗ୍ରୀନ୍‌ଲାଣ୍ଡ, ଆଇସ୍‌ଲ୍ୟାଣ୍ଡ, ନରୱେ, ସୁଇଡେନ୍, ଫିନ୍‌ଲାଣ୍ଡ, ସୋଭିୟେଟ ଇଉନିୟନର ଉତ୍ତର ଅଞ୍ଚଳରେ ଘନ ଅନ୍ଧକାର ରାତ୍ରିରେ ବେଶ୍ ପରିଷ୍କାର ଦିଶେ । ଆକାଶ ନିର୍ମଳ ଥିଲେ ଏହା ଭଲ ଦିଶେ । ସାଧାରଣ ଦିନ ଅପେକ୍ଷା ଯେତେବେଳେ ସୂର୍ଯ୍ୟ ଦେହରେ ସୌରକଳଙ୍କ ଅଧିକ ଦେଖାଯାଏ, ସେତେବେଳେ ମେରୁ ଆଲୋକ ଅଧିକ ସୁନ୍ଦର ଓ ହୃଦୟଗ୍ରାହୀ ଦିଶେ । ଏହି ସୌରକଳଙ୍କ ପ୍ରତି ଏଗାର ବର୍ଷରେ ଥରେ ଲେଖାଏଁ ସୂର୍ଯ୍ୟ ଦେହରେ ବ୍ୟାପକ ଭାବରେ ଦେଖାଯାଏ । ଠିକ୍ ସେତିକିବେଳେ ମେରୁ ଆଲୋକ ଉତ୍ତରମେରୁଠାରେ ଖୁବ୍ ଭଲଭାବରେ ଦିଶେ । ଅନ୍ୟ ଦିନମାନଙ୍କରେ ଏହା ଦେଖାଯାଏ, କିନ୍ତୁ ସେତେ ସୁନ୍ଦର ଓ ସ୍ପଷ୍ଟ ଦିଶେନି ।

ଏହା ଯେତେବେଳେ ପରିଷ୍କାର ଦିଶେ, ସେତେବେଳେ ଆକାଶରେ ଏକ ପ୍ରକାଣ୍ଡ ପରଦା ଝୁଲିଲା ଭଳି ଦିଶେ । ଏହି ପରଦାର ରଙ୍ଗ ହଳଦିଆ, ଧଳା ଓ ଏହି ପରଦାର ତଳ ଅଂଶରେ ଗୋଲାପୀ ରଙ୍ଗର ବର୍ଡର ଥିଲାଭଳି ଦିଶେ ଏବଂ ଏହାର ଶେଷ ଅଂଶ ବାଇଗଣିଆ ରଙ୍ଗରେ ରଞ୍ଜିତ ହୋଇଥାଏ । ଏହି ରଙ୍ଗ ବେଶ୍ ଉଜ୍ଜ୍ୱଳ ଦିଶେ । ଏହି ବିରାଟ ପରଦା ପବନରେ ପତାକା ଦୋହଲିଲା ଭଳି ଦୋହଲୁଥାଏ । ପରଦାକୁ ହଲାଇଲେ ଏହା ଯେମିତି ଢେଉଭଳି ଦୋହଲିଯାଏ, ଏହି ପ୍ରାକୃତିକ ପରଦା ସେମିତି ଦୋହଲୁଥାଏ । ଏହା ଦୋହଲିଲାବେଳେ ଏକ ପ୍ରକାର ଶବ୍ଦ ଖୁବ୍ ଧୀର ସ୍ୱରରେ ଶୁଣାଯାଏ । ଆକାଶରେ ଏହି ପରଦା ଦ୍ୱାରା ପୃଥିବୀପୃଷ୍ଠ ଆଲୋକିତ ଦିଶେ, ଅବଶ୍ୟ ଚନ୍ଦ୍ରାଲୋକ ଭଳି ନୁହେଁ ।



ଉତ୍ତରମେରୁ ଆଲୋକ

ତେବେ ଏହି ଆଲୋକରେ ପଢ଼ି ହୁଏ । ଏହି ପରଦା ବେଳେବେଳେ ଏତେ ଜୋରରେ ଦୋହଲେ ଯେ, ଲୋକ ଏହାକୁ ମେରି ଡେନସର ଆଖ୍ୟା ଦେଇଥାନ୍ତି ।

ଏହି ପ୍ରାକୃତିକ ଉତ୍ତରମେରୁ ଆଲୋକର କାରଣ କ'ଣ, ଏପର୍ଯ୍ୟନ୍ତ ନିର୍ଧାର୍ଯ୍ୟ ଭାବରେ ଜଣାପଡ଼ିନି । ତେବେ ସୌରକଳଙ୍କ ଦେଖାଯିବାବେଳେ ସୂର୍ଯ୍ୟ ଦେହରୁ ଆସୁଥିବା ଅତି କ୍ଷୁଦ୍ର କ୍ଷୁଦ୍ର ଆଲୋକ-ତଡ଼ିତ୍‌କଣିକାର ମହାସ୍ରୋତ ଏହି ଦୃଶ୍ୟର ସୃଷ୍ଟି ପାଇଁ ଦାୟୀ । ସୌରକଳଙ୍କ ପ୍ରତି ୧୧ ବର୍ଷରେ ଅଧିକ ପରିମାଣରେ ପରିଦୃଶ୍ୟ ହେଉଥିବାରୁ ସେତିକିବେଳେ ମେରୁ ଆଲୋକ ଅତୀବ ସୁନ୍ଦର ଦିଶେ । ଅନ୍ୟ ସମୟରେ ଏହା ଦେଖାଯାଏ ସତ, ତେବେ ଏତେ ସୁନ୍ଦର ଓ ମନୋମୁଗ୍ଧକର ଦେଖାଯାଏନି । ଏହି ପରଦା କଦାପି ଝୁଲିଲାଭଳି ଦେଖାଯାଏନି । ପଛକୁ ପଛ ଅନେକ ପରଦା ବିଭିନ୍ନ ରଙ୍ଗରେ ରଞ୍ଜିତ ହୋଇ ଆକାଶରେ ଝୁଲିଲାଭଳି ଦେଖାଯାଏ । ଏହା ଥରେ ଉତ୍ତରମେରୁ ବ୍ୟତୀତ ଶ୍ରୀଲଙ୍କାରେ ଦେଖାଯାଉଥିଲା । ଏହାକୁ ସେଠାକାର ଲୋକେ ଭଗବାନ ବୁଦ୍ଧଙ୍କ ବାର୍ତ୍ତା ବୋଲି ପ୍ରଚାର କରିଥିଲେ । ଏଡ୍‌ମଣ୍ଡହେଲେ ଏହାକୁ ଆକାଶରେ ଦେଖି ଏହାର ସମ୍ପର୍କ ପୃଥିବୀର ଚୁମ୍ବକୀୟ ଶକ୍ତି ସହିତ ଅଛି ବୋଲି ସୂଚାଇଥିଲେ । ଏହାର କାରଣ

**ସମ୍ବନ୍ଧ**ରେ ଆଉ କେତେକ ବୈଜ୍ଞାନିକ ମତ ଦିଅନ୍ତି ଯେ, ସୂର୍ଯ୍ୟ ଦେହରୁ ଯେଉଁ ପ୍ରୋଟନ ଓ ଇଲେକଟ୍ରନ କଣିକା ଆସେ, ତାହା ମହାଶୂନ୍ୟରେ ଚାରିଆଡ଼କୁ ସେକେଣ୍ଡକୁ ୪୫୦ କିଲୋମିଟର ବେଗରେ ଖେଳିଯାଏ । ଏଗୁଡ଼ିକ ଯେତେବେଳେ ପୃଥିବୀର ବାୟୁମଣ୍ଡଳ ଭିତରକୁ ପଶିଆସନ୍ତି, ପୃଥିବୀର ଚୁମ୍ବକୀୟ କ୍ଷେତ୍ର ଯାହାକି ଉତ୍ତର ଓ ଦକ୍ଷିଣ ମେରୁଠାରେ ଖୁବ୍ ଶକ୍ତିଶାଳୀ, ଏମାନଙ୍କ ଦିଗ ବଦଳାଇଦେବା ସଙ୍ଗେ ସଙ୍ଗେ ଏମାନଙ୍କ ବେଗ ବଦଳାଇଦିଏ । ତପ୍ରେ ଏହି କଣିକାଗୁଡ଼ିକ ବାୟୁମଣ୍ଡଳର ଅଣୁ ସହିତ ଉପର ଆକାଶରେ ଧକ୍କା ଖାଆନ୍ତି । ଏହା ଫଳରେ ଆୟନୀକରଣ ହୁଏ । ଏହି ଆୟନଗୁଡ଼ିକ ରଙ୍ଗିନ ଆଲୋକର ସୂତ୍ରପାତ କରନ୍ତି । ଯେତେବେଳେ ପୃଥିବୀର ଚୁମ୍ବକୀୟ କ୍ଷେତ୍ରରେ ନାନା ଗୋଳମାଳ ହେତୁ ଚୁମ୍ବକୀୟ ଝଡ଼ ହୁଏ, ସେତେବେଳେ ଏହି ମେରୁ ଆଲୋକ ସୃଷ୍ଟି ହୁଏ ଓ ସୁନ୍ଦର ଦିଶେ ।

# ବରମୁଡ଼ାର ମୃତ୍ୟୁ-ତ୍ରିଭୁଜ

ଆମେରିକାର ଦକ୍ଷିଣ-ପୂର୍ବ ଦିଗରେ ଆଟଲାଣ୍ଟିକ୍ ମହାସାଗରରେ ଏକ ଅଞ୍ଚଳ ଅବସ୍ଥିତ, ଯାହାକି ବରମୁଡ଼ାର ମୃତ୍ୟୁ-ତ୍ରିଭୁଜ ଭାବରେ ଖ୍ୟାତ । ଏହା ଏକ ଅତି ରହସ୍ୟମୟ ଅଞ୍ଚଳ ଭାବରେ ଖ୍ୟାତି ଅର୍ଜନ କରିଛି । ଆମେରିକାର ଦକ୍ଷିଣକୁ ଥିବା ଫ୍ଲୋରିଡ଼ା ସହିତ ବରମୁଡ଼ା ଓ ପୋର୍ଟୋରିକୋକୁ ଧରି ଗୋଟିଏ ତ୍ରିଭୁଜାକାର ଅଞ୍ଚଳ ହେଉଛି ଏହି ବରମୁଡ଼ା ତ୍ରିଭୁଜ । ଏହା ଏକ ବିରାଟ ଜଳଭୂମି, ସମୁଦ୍ର । ଏହି ତ୍ରିକୋଣ ସ୍ଥାନଟା ୨୫ ଡିଗ୍ରୀରୁ ୪୦ ଡିଗ୍ରୀ ଅକ୍ଷାଂଶ ଓ ୫୫ ଡିଗ୍ରୀରୁ ୮୫ଡିଗ୍ରୀ ଦ୍ରାଘିମା ଭିତରେ ଅବସ୍ଥିତ । ଏହାର କ୍ଷେତ୍ରଫଳ ହେବ ୩୯୦୦୦,୦୦ ବର୍ଗ କିଲୋମିଟର । ଏହି ଅଞ୍ଚଳଟି ଭିତରେ ଏତେ ଆଶ୍ଚର୍ଯ୍ୟଜନକ ଘଟଣା ଘଟୁଛି, ଯାହାର କାରଣ କିଛି ଜଣାପଡୁନି । ସେଥିପାଇଁ ଏହା ପ୍ରକୃତି ଜଗତର ଏକ ଆଶ୍ଚର୍ଯ୍ୟ ଭାବରେ ରହିଯାଇଛି । ଏହି ଅଞ୍ଚଳ ଦେଇ ଯେତେ ଜଳଜାହାଜ, ବୁଡ଼ାଜାହାଜ କି ଉଡ଼ାଜାହାଜ ଯାଇଛି, ସେସବୁ କେଉଁଆଡ଼େ ଅନ୍ତର୍ହିତ ହୋଇଯାଇଛି, ସେସବୁର ପତ୍ତା ମିଳିନି । ଏହି ଅନ୍ତର୍ହିତ ହୋଇଥିବା ଜାହାଜକୁ ଯେଉଁମାନେ ଖୋଜିବାକୁ ଯାଇଛନ୍ତି, ସେମାନେ ମଧ୍ୟ ସେମାନଙ୍କ ସହିତ ଅନ୍ତର୍ହିତ ହୋଇଯାଇଛନ୍ତି । ଜାହାଜ, ଜାହାଜର ନାବିକ, ଯାତ୍ରୀମାନେ ଏହି ଅଞ୍ଚଳ ଭିତରେ କୁଆଡ଼େ ଉଭେଇ ଯାଉଛନ୍ତି, ତାର ପତ୍ତା କେହି ପାଇପାରୁ ନାହାନ୍ତି । ସେଥିପାଇଁ ଏହି ଅଞ୍ଚଳର ନାମ ମୃତ୍ୟୁ-ତ୍ରିଭୁଜ ବା ଭୂତ-ତ୍ରିଭୁଜ ବୋଲି ରଖାଯାଇଛି । ଇତିହାସରୁ ଜଣାଯାଇଛି ଯେ, ବିଗତ ଦୁଇଶହ ବର୍ଷ ଭିତରେ ୫୦ ଗୋଟା ବଡ଼ ଜଳଜାହାଜ ଓ ୨୦ ଗୋଟି ଉଡ଼ାଜାହାଜ ଏହି ଅଞ୍ଚଳ ଭିତରେ ଅଦୃଶ୍ୟ ହୋଇଯାଇଛି । ସେମାନେ କେଉଁଆଡ଼େ ଗଲେ ତା'ର ଖବର କେହି ପାଇପାରୁ ନାହାନ୍ତି । ୧୯୬୮ ମସିହାରେ ଆମେରିକାର ଅତି ଶକ୍ତିଶାଳୀ ନିଉକ୍ଲିୟାର ବୁଡ଼ାଜାହାଜ ସ୍କାରପିଅନ୍ ଅତି ଅସ୍ୱାଭାବିକ ଭାବରେ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ଏହି ଅଞ୍ଚଳରେ । ସେହି ଜାହାଜ କୁଆଡ଼େ ଗଲା,

ତା'ର ପତ୍ତା ଏପର୍ଯ୍ୟନ୍ତ ମିଳିନି । ସେହିଭଳି ୧୯୪୫ ମସିହାରେ ପାଞ୍ଚଗୋଟି ବୋମା ନିକ୍ଷେପକାରୀ ଉଡ଼ାଜାହାଜ ଏହି ଅଞ୍ଚଳରେ କେଉଁଆଡ଼େ ଉଭେଇଗଲା କେହି ଜାଣିପାରିଲେନି । ତା ପରେ ପରେ ଏହି ଅଞ୍ଚଳରେ କେତେ ମଣିଷ, ଜଳଜାହାଜ ଓ ଉଡ଼ାଜାହାଜ ଯେ ଅନ୍ତର୍ଦ୍ଧାନ ହୋଇଗଲେଣି, ତାର ଗଣନା ନାହିଁ । ଏହି ଅଞ୍ଚଳରେ ଏମିତି କାହିଁକି ହେଉଛି, ଜାଣିବା ପାଇଁ କେତେ ନିର୍ଦ୍ଧାରଣକାରୀ ଦଳ ସେହି ଅଞ୍ଚଳକୁ ଗଲେଣି, କିନ୍ତୁ ସେମାନେ ଆଉ ଫେରିନାହାନ୍ତି । ଏହି ଅଞ୍ଚଳର ଗୂଢ଼ ରହସ୍ୟ କ'ଣ ଜାଣିବା ପାଇଁ ଯିଏ ଯାଇଛି, ସିଏ ଆଉ ଫେରିନି । ଏହି ଯେଉଁ ମଣିଷ କି ଜାହାଜ ଅନ୍ତର୍ହିତ ହୁଏ, ସେମାନଙ୍କ ଶେଷ ଅବସ୍ଥା କ'ଣ ହୁଏ, ସେମାନେ ପ୍ରକୃତରେ କୁଆଡ଼େ ଯାଆନ୍ତି, କେହି ଠିକ୍ କରି ଜାଣି ପାରନ୍ତିନି । ଇତିମଧ୍ୟରେ ଏହି ଅଞ୍ଚଳରେ ହଜାରରୁ ଅଧିକ ଲୋକ ଅନ୍ତର୍ହିତ ହୋଇଗଲେଣି ।




ବରମୁଡ଼ା ମୃତ୍ୟୁ ତ୍ରିଭୁଜ

କେତେକ ବୈଜ୍ଞାନିକ କହନ୍ତି ଯେ, ଏହି ଅଞ୍ଚଳରେ ଦ୍ରୁତ ଅଧୋମୁଖୀ ବାୟୁସ୍ରୋତ ହେତୁ ଜଳଜାହାଜ ଓ ଉଡ଼ାଜାହାଜଗୁଡ଼ାକ ଧ୍ୱଂସ ପାଇଯାଏ ଓ ଏଥି ସହିତ ଦ୍ରୁତ ସମୁଦ୍ର-ସ୍ରୋତ ଦ୍ୱାରା ସେସବୁର ଭଗ୍ନାବଶେଷ

ଗୁଡ଼ିକ ବହୁଦୂରକୁ ବୋହି ନିଆହୋଇଯାଏ । କେତେକେ କହନ୍ତି ଯେ, ଏହି ଅଞ୍ଚଳରେ ଅଦୃଶ୍ୟ ଏକ ବିରାଟ ଚୁମ୍ବକୀୟ କ୍ଷେତ୍ର ହେତୁ ରେଡ଼ିଓ ସଙ୍କେତ ସବୁ ବ୍ୟାହତ ହୁଏ । ପ୍ରକୃତରେ ଯେଉଁସବୁ ଉଡ଼ାଜାହାଜ କି ଜଳଜାହାଜ ଅନ୍ତର୍ହିତ ହୋଇଯାଏ, ସେସବୁ ଜାହାଜ ଏହି ଅଞ୍ଚଳରେ ପହଞ୍ଚିଲାକ୍ଷଣି ଏହା ରେଡ଼ିଓ ସଙ୍କେତ ଦେବାକୁ ବିଫଳ ହୁଏ ଓ ତା'ପରେ ତାର ଖୋଜଖବର ମିଳେନି । ସୋଭିଯେଟ୍ ବୈଜ୍ଞାନିକ ଭ୍ଳେନରିଖ ଟାଲାଲଯେଭେଙ୍କ ମତରେ ବୃହତ୍ ସାଗରୀୟ ଘୂର୍ଣ୍ଣନର କେନ୍ଦ୍ରରେ ଚୁମ୍ବକୀୟ ବ୍ୟତିକ୍ରମ ଘଟୁଥିବାରୁ ଜାହାଜ ଯେତେବେଳେ ଏହି ଅଞ୍ଚଳରେ ପହଞ୍ଚେ ଏଠାର ଅତି ଶକ୍ତିଶାଳୀ ଚୁମ୍ବକୀୟ ଶକ୍ତି ଜାହାଜଟିକୁ ପୂରା ସାଗର ଅଭ୍ୟନ୍ତରରୁ ଟାଣି ନେଇଯାଏ, ଯେଉଁଠାରେ ଶକ୍ତି ସ୍ରୋତମାନ ଏହାକୁ ଭାଙ୍ଗିରୁଜି ପକାନ୍ତି ଓ ଭଗ୍ନାବଶେଷଗୁଡ଼ିକ ସମୁଦ୍ର-ସ୍ରୋତର ଶହ ଶହ କିଲୋମିଟର ଦୂରକୁ ଚାଲିଯାଏ, ଫଳରେ ସେ ଅଞ୍ଚଳରେ ଏସବୁର ପତ୍ତା ମିଳେନି । ଏ ପର୍ଯ୍ୟନ୍ତ କୌଣସି ତଥ୍ୟ ଗ୍ରହଣଯୋଗ୍ୟ ହୋଇନି । ଏବେ ବି ଏହାର ରହସ୍ୟ ଅନୁଦ୍‌ଘାଟିତ ।

# ଆଧୁନିକ ଯୁଗର ସପ୍ତାଶ୍ଚର୍ଯ୍ୟ

୧. ମାଉଣ୍ଟ ରସମୋର ମେମୋରିଆଲ

ଏହା ଯୁକ୍ତରାଷ୍ଟ୍ର ଆମେରିକାର ଦକ୍ଷିଣ ଡାକୋଟା ରାଜ୍ୟରେ ଅବସ୍ଥିତ ।

୨. ପୃଥିବୀର ବୃହତ୍ତମ ଝୁଲାପୋଲ ଭେରାଜାନୋ ନେରୋଜ୍

ଏହା ନିଉୟର୍କ ବନ୍ଦର ଉପକଣ୍ଠରେ ଥିବା ପୃଥିବୀର ବୃହତ୍ତମ ଝୁଲାପୋଲ ଅଟେ ।

୩. ଆଇଫେଲ୍ ଟାୱାର

ଏହା ଫ୍ରାନ୍ସର ରାଜଧାନୀ ପାରିସ୍ ସହରରେ ଅବସ୍ଥିତ ।

୪. ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ

ଏହା ନିଉୟର୍କ ନଗରୀର ବହୁତଳ ପ୍ରାସାଦ ପାଇଁ ପ୍ରସିଦ୍ଧ ।

୫. ଷ୍ଟାଚ୍ୟୁ ଅଫ୍ ଲିବର୍ଟି

ଏହା ନିଉୟର୍କ ବନ୍ଦରଠାରୁ ଅଳ୍ପ ଦୂରରେ ଏକ ଦ୍ୱୀପରେ ଅବସ୍ଥିତ ବିରାଟ ମୂର୍ତ୍ତି ।

୬. ସେଟର୍ଣ୍ଣ ରକେଟ୍

ଏହି ଯାନଟି ଆମେରିକାର ଚନ୍ଦ୍ର-ଯାତ୍ରୀମାନଙ୍କୁ ବୋହି ନେବା ପାଇଁ ତିଆରି ହୋଇଛି ।

୭. କମ୍ପ୍ୟୁଟର୍

ଏହି ଯନ୍ତ୍ରଟିରେ ଅତି ଜଟିଳ ଗଣନାମାନ ହୁଏ ।

# ମାଉଣ୍ଟ ରସମୋର ମେମୋରିଆଲ୍

ଆମେରିକାର ସାଉଥ୍ ଡାକୋଟା ରାଜ୍ୟରେ ଥିବା ଏକ ପର୍ବତ "ବ୍ଲାକ୍‌ହିଲ୍"ରେ ଥିବା ରସମୋର ଶୃଙ୍ଗ ଉପରେ ପର୍ବତ ଗାତ୍ରରେ ଖୋଦିତ ଚାରିଜଣ ଆମେରିକାନ୍ ପ୍ରେସିଡେଣ୍ଟଙ୍କ ମୁଖାକୃତି ଆଧୁନିକ ଯୁଗର ଏକ ଆଶ୍ଚର୍ଯ୍ୟ ବୋଲି ଧରାଯାଏ । ପର୍ବତର ଗାତ୍ରରେ ଏହି ମୁଖଗୁଡ଼ିକ ଖୋଦନ କରାଯାଇଛି । ଯେଉଁ ଚାରିଜଣ ପ୍ରେସିଡେଣ୍ଟଙ୍କ ମୁଖାକୃତି ଏହି ପର୍ବତ ଗାତ୍ରରେ ରହିଛି, ସେମାନେ ହେଲେ ଜର୍ଜ ୱାଶିଂଟନ୍, ଟମାସ୍ ଜେଫ୍ରସନ୍, ଆବ୍ରାହମ୍ ଲିଙ୍କନ୍ ଓ ଥିଓଡ଼ର ରୁଜଭେଲ୍‌ଟ । ପ୍ରତ୍ୟେକ ମୁଖର ଉଚ୍ଚତା ୬୦ ଫୁଟ । ଏମାନଙ୍କ ପୂର୍ଣ୍ଣ ଶରୀର ଯଦି ଖୋଳାଯାଇ ତିଆରି ହୋଇଥାନ୍ତା, ତେବେ ଗୋଟିଏ ଗୋଟିଏ ପୂର୍ଣ୍ଣ ଶରୀରର ଉଚ୍ଚତା ହୋଇଥାନ୍ତା ୪୬୫ ଫୁଟ । ଏହି ପ୍ରସ୍ତର-ଖୋଦିତ ମୂର୍ତ୍ତିକୁ ଦେଖିବା ପାଇଁ ପ୍ରତିବର୍ଷ ପନ୍ଦରଲକ୍ଷ ଦର୍ଶକ ଏଠାକୁ ଆସନ୍ତି । ମାଉଣ୍ଟ ରସମୋର ସାଉଥ୍ ଡାକୋଟା ରାଜ୍ୟର ପ୍ରଧାନ ସହର ରେପିଡସିଟିଠାରୁ ମାତ୍ର ୩୭ କିଲୋମିଟର ଦୂର । ଅନ୍ୟତମ ସହର କିଙ୍ଗଷ୍ଟନ୍‌ଠାରୁ ଏହା ମାତ୍ର ପାଞ୍ଚ କିଲୋମିଟର ଦୂର । ଏହି ସ୍ଥାନଟି ମାଉଣ୍ଟ ରସମୋର ଜାତୀୟ ସ୍ମୃତିର ଏକ ଅଂଶ ଭାବରେ ଖ୍ୟାତ ।

ଏହି ମୂର୍ତ୍ତିର ଖୋଦନକାରୀ ହେଉଛନ୍ତି ବିଖ୍ୟାତ କାରିଗର ଜନ୍ ବୋରଗ୍ଲମ୍ । ସେ ଏଥିପୂର୍ବରୁ ଆବ୍ରାହମ୍ ଲିଙ୍କନ୍‌ଙ୍କ ମୁଣ୍ଡ ରାଜଧାନୀ ୱାଶିଂଟନ୍‌ରେ ଛଅଟନ୍ ଓଜନର ଏକ ମାର୍ବଲରୁ ଖୋଦନ କରି ପ୍ରସିଦ୍ଧି ଅର୍ଜନ କରିଥିଲେ । ଡୋଆନ ରବିନ୍‌ସନ୍ ଯୋଜନା ଦେଲେ ଯେ, ଚାରିଜଣ ପ୍ରେସିଡେଣ୍ଟଙ୍କ ମୁଖ ପର୍ବତ ଗାତ୍ରରେ ଖୋଦିତ ହେବ । କାଲଭିନ୍ କୁଲିଜ୍‌ଙ୍କ ସମୟରେ ଏଭଳି ଏକ ଯୋଜନା କାର୍ଯ୍ୟକାରୀ ହେବାର ସିଦ୍ଧାନ୍ତ ହେଲା । ଏଥିପାଇଁ ଯୁକ୍ତରାଷ୍ଟ୍ରର ସରକାରୀ ତହବିଲ୍‌ରୁ ଅଢ଼େଇଲକ୍ଷ ଡଲାର ମଞ୍ଜୁରୀ ଦିଆଗଲା । ୧୯୨୭ ମସିହାରେ ବୋରଗଲମ ଏହି କାର୍ଯ୍ୟ ଆରମ୍ଭ କଲେ । ୧୯୪୧ରେ ଏହା ଶେଷ ହେଲା । ଚଉଦ ବର୍ଷ ଲାଗିଲା ।



ମାଉଣ୍ଟ୍ ରସମୋର ମେମୋରିଆଲ୍

ପ୍ରଥମେ ୱାଶିଂଟନ୍‌ଙ୍କ ମସ୍ତକ ଖୋଦିତ ହେଲା, ତତ୍‌ପରେ ଟମାସ୍ ଜେଫ୍ରସନ୍ । ଏହା ପରେ ଥିଓଡ଼ର ରୁଜଭେଲ୍‌ଟ ଓ ଶେଷରେ ଆବ୍ରାହମ୍ ଲିଙ୍କନ୍‌ଙ୍କ ମସ୍ତକ ଖୋଦିତ ହେଲା । ୧୯୪୧ରେ ଜନ୍ ବୋର୍‌ଗଲମ୍ ଚିକାଗୋରେ ପ୍ରାଣତ୍ୟାଗ କଲେ । ଏହାପରେ ଯାହା କାମ ବାକୀ ଥିଲା, ତାଙ୍କ ପୁଅ ଶେଷ କଲେ । ପ୍ରତିବର୍ଷ ଏହି ମୁଖଗୁଡ଼ିକ ମିସ୍ତ୍ରିମାନଙ୍କ ଦ୍ୱାରା ସଫା କରାଯାଏ । ଏଥିପାଇଁ ଗ୍ରେନାଇଟ୍ ପଥରଗୁଣ୍ଡ, ଧଳାଲେଡ୍ ଲବଣ ଓ ଲିନ୍‌ସିଡ୍ ତେଲର ମିଶ୍ରଣ ବ୍ୟବହୃତ ହୁଏ ।

# ପୃଥିବୀର ବୃହତ୍ତମ ଝୁଲାପୋଲ ଭେରାଜାନୋ ନେରୋଜ୍

ଏହି ପୋଲଟି ନିଉୟର୍କ ବନ୍ଦରର ଦ୍ୱାରଦେଶରେ ଅବସ୍ଥିତ । ଏଥିରେ ବ୍ୟବହୃତ ଇସ୍ପାତ-ସ୍ତମ୍ଭ, ଯାହା ଉପରେ ଇସ୍ପାତ ଦଉଡ଼ିରେ ପୋଲଟି ଝୁଲି ରହିଛି, ତା'ର ଉଚ୍ଚତା ହେଉଛି ୬୮୦ ଫୁଟ । ଏହି ପୋଲଟିର ଲମ୍ବ ୪୨୬୦ ଫୁଟ ଓ ପୋଲଟି ଏଡ଼େ ଚଉଡ଼ା ଯେ, ଏଥିରେ ଗାଡ଼ି ଯିବାଆସିବା ପାଇଁ ୧୨ ଗୋଟି ଲେନ୍ ରହିଛି । ଏହା ଉପରେ ବାରଟି ଲାଇନ୍‌ରେ ଗାଡ଼ି ଏକ ସଙ୍ଗେ ଯିବାଆସିବା କରିପାରେ । ଏହି ପୋଲଟି



ପୃଥିବୀର ବୃହତ୍ତମ ଝୁଲାପୋଲ ଭେରାଜାନୋ ନେରୋଜ୍

୧୯୬୪ ମସିହାରେ ତିଆରି ହୋଇ ଯିବାଆସିବା ପାଇଁ ଖୋଲା ଯାଇଥିଲା । ଏଥିରେ ଯେଉଁ ମୋଟା ମୋଟା ଇସ୍ପାତ-ତାରରୁ ଦଉଡ଼ି ବଳାଯାଇ ତିଆରି ହୋଇଛି, ସେହି ତାରର ଲମ୍ବ ଦେଢ଼ଲକ୍ଷ ମାଇଲରୁ ଅଧିକ । ପୃଥିବୀଠାରୁ ଚନ୍ଦ୍ରର ଅଧା ଦୂରତ୍ୱରୁ ଅଧିକ । ଏହାର ସ୍ତମ୍ଭ ଦୁଇଟିର ମୂଳ ଦୂରତ୍ୱଠାରୁ ଶିଖର ଦୂରତ୍ୱ ୪ ସେଣ୍ଟିମିଟର ଅଧିକ । ଏହା ପୃଥିବୀ ପୃଷ୍ଠର ବକ୍ରତା ଯୋଗୁଁ ଏପରି ହୋଇଛି । ଏଥିରେ ଯେଉଁ ଇସ୍ପାତ ଦଉଡ଼ା ଏହି ଝୁଲାପୋଲ ପାଇଁ ବ୍ୟବହୃତ ହୋଇଛି, ସେହି ଦଉଡ଼ାର ଗୋଲେଇ ପ୍ରାୟ ସାଢ଼େ ତିନିଫୁଟ । ଏଥି ପୂର୍ବରୁ ସାନଫ୍ରାନ୍‌ସିସ୍‌କୋର ଗୋଲଡେନ୍ ଗେଟ୍‌ବ୍ରିଜ୍ ପୃଥିବୀର ବୃହତ୍ତମ ଝୁଲାପୋଲ ଥିଲା ।

# ଆଇଫେଲ୍ ଟାୱାର

ଏହି ସ୍ତମ୍ଭଟିର ସ୍ରଷ୍ଟା ହେଉଛନ୍ତି ସୁବିଖ୍ୟାତ ଫରାସୀ ଇଞ୍ଜିନିୟର ଆଲେକ୍‌ଜାଣ୍ଡର ଗୁଷ୍ଟଭ୍ ଆଇଫେଲ୍ । ତାଙ୍କରି ନାମାନୁସାରେ ଏହି ସ୍ତମ୍ଭଟି ନାମିତ । ଲୁହାକଡ଼ିକୁ ପରସ୍ପର ସହିତ ଯୋଡ଼ି ସେ ଏହି ବିରାଟ ସ୍ତମ୍ଭ ତିଆରି କରିଥିଲେ । ୧୮୮୯ ମସିହାରେ ଫରାସୀ ବିପ୍ଳବର ଶତତମ ଜୟନ୍ତୀ ଉପଲକ୍ଷେ ଜାତୀୟ ନିଷ୍ପତ୍ତି ଅନୁଯାୟୀ ସେ ଏହି ସ୍ତମ୍ଭଟି ତିଆରି କରି ଅମର ହୋଇ ଯାଇଛନ୍ତି । ପାରିସ୍ ସହରକୁ ପଶିଗଲେ ଏହି ସ୍ତମ୍ଭଟି ସମସ୍ତଙ୍କର ଦୃଷ୍ଟିଗୋଚର ହୁଏ । ଏହି ଟାୱାରଟିର ଉଚ୍ଚତା ୯୮୪ ଫୁଟ । ଏହା ଗୋଟାସାରା ଇସ୍ପାତରେ ତିଆରି । ଏଥିରେ ହାରାହାରି ୭୩୦୦ଟନ୍ ଇସ୍ପାତ ଲାଗିଛି । ଏହାର ଆକାର ଏକ ବକ୍ର ପିରାମିଡ୍ ଭଳି । ଏହା ଅନେକଦିନ ଧରି ପୃଥିବୀର ଉଚ୍ଚତମ ସ୍ତମ୍ଭ ଥିଲା । ମିଶରର ପିରାମିଡ୍‌ଠାରୁ ଏହା ଦୁଇଗୁଣ ଉଚ୍ଚା । ୧୯୩୦ ମସିହାରେ ନିଉୟର୍କରେ କ୍ରାଏସ୍‌ଲର ପ୍ରାସାଦ ତିଆରି ହେଲା ପର୍ଯ୍ୟନ୍ତ ଏହା ପୃଥିବୀର ସର୍ବୋଚ୍ଚ ମିନାର ଥିଲା ।

ଆଇଫେଲ୍ ଟାୱାର ଉପରେ ତିନୋଟି ଷ୍ଟେଜ୍ ଅଛି । ଏହି ଟାୱାରଟି ଚାରୋଟି ଗୋଡ଼ ଉପରେ ଠିଆ ହୋଇଛି । ଏହି ଚାରୋଟି ଗୋଡ଼ରୁ ଉପରକୁ ଯିବାଆସିବା ପାଇଁ ଚାରୋଟି ଲିଫ୍‌ଟ ଲାଗିଛି । ଏହି ଲିଫ୍‌ଟ ସାହାଯ୍ୟରେ ଟାୱାରର ତିନୋଟି ଷ୍ଟେଜ୍ ପର୍ଯ୍ୟନ୍ତ ଯାଇହୁଏ । ପ୍ରଥମ ଷ୍ଟେଜ୍‌ରେ ସ୍ତମ୍ଭ ଚାରିପାଖରେ ଏକ ପ୍ରଶସ୍ତ ଷ୍ଟେଜ୍ ରହିଛି । ଏଠାରୁ ପାରିସ୍ ସହରକୁ ଭଲଭାବରେ ଦେଖିହୁଏ । ଏଠାରେ ନାନା ଦୋକାନ, ରେଷ୍ଟୁରାଣ୍ଟ ଆଦି ରହିଛି । ଏଠାରୁ ଆହୁରି ଉଚ୍ଚରେ ଦ୍ୱିତୀୟ ଷ୍ଟେଜ୍ । ସବା ଉପରକୁ ତୃତୀୟ ଷ୍ଟେଜ୍ । ଏହି ଶେଷ ଷ୍ଟେଜ୍‌ଟି ପାରିସ୍‌ର ବେତାର ଚିତ୍ର ଓ ଟେଲିଭିଜନ୍ ଚିତ୍ର ପ୍ରେରଣ ପାଇଁ ବ୍ୟବହୃତ ହୁଏ । ଲିଫ୍‌ଟ ବ୍ୟତୀତ ପାହାଚ ମଧ୍ୟ ଅଛି ଉପରକୁ ଯିବାପାଇଁ । ଏହାକୁ ଅନେଇଲେ ମନ ଆଶ୍ଚର୍ଯ୍ୟରେ ପୂରିଯାଏ । ଏଡ଼େ ବିରାଟ ସ୍ତମ୍ଭ ଯେ ମଣିଷ ତିଆରି କରିପାରେ, ସ୍ତମ୍ଭକୁ ଅନାଇଲେ ସହଜରେ ବିଶ୍ୱାସ ହୁଏନି । ସେଥିପାଇଁ



ଆଇଫେଲ୍ ଟାୱାର

ଏହାକୁ ଆଧୁନିକ ଯୁଗର ଏକ ଆଶ୍ଚର୍ଯ୍ୟ ବୋଲି ଧରାଯାଏ । ଏହି ସ୍ତମ୍ଭ ଉପରୁ ଠିଆହୋଇ ଚାରିଆଡ଼କୁ ଅନାଇଲେ ୮୫ ମାଇଲ ଦୂର ପର୍ଯ୍ୟନ୍ତ ସ୍ଥାନକୁ ଦେଖିହୁଏ । ପାରିସ୍‌ରେ ଏହା ଏକ **ଦର୍ଶନୀୟ ସ୍ଥାନ** ।

# ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ

ବହୁଦିନ ଧରି ଏହା ପୃଥିବୀର ଉଚ୍ଚତମ ପ୍ରାସାଦ ଭାବରେ ପରିଚିତ ଥିଲା । ଏଥିରେ ଯେତେ ସଂଖ୍ୟକ ତାଲା ଅଛି, ଅନ୍ୟ କୌଣସି ପ୍ରାସାଦରେ ଏତେ ସଂଖ୍ୟକ ତାଲା କିଛିଦିନ ତଳେ ନ ଥିଲା । ଏହି ପ୍ରାସାଦଟି ୧୦୨ ତାଲା ବିଶିଷ୍ଟ । ଏହା ନିଉୟର୍କ ନଗରୀର ମାନହାଟନ ଅଞ୍ଚଳରେ ୧୯୩୧ ମସିହାରେ ତିଆରି ହୋଇଥିଲା । ଏହାର ଉଚ୍ଚତା ହେଉଛି ୧୨୫୦ ଫୁଟ । ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ ସିନା ଉପରକୁ ୧୦୨ ତାଲା, ଏହା ତଳେ ଆହୁରି ଦୁଇତାଲା ରହିଛି । ଏହି ବିଲ୍ଡିଂର ପାଦଦେଶକୁ ୮୦ ତାଲା ପର୍ଯ୍ୟନ୍ତ ବିରାଟ ବିରାଟ ଲିଫଟ୍‌ମାନ ଲାଗିଛି । ଏହି ଲିଫ୍‌ଟ ଏତେ ଜୋରରେ ଯାଏ ଯେ, ଏଥିରେ ଗଲେ ୮୦ ତାଲାରେ ପହଞ୍ଚିବା ପାଇଁ ମିନିଟକରୁ କମ୍ ସମୟ ଲାଗେ । ସେଠାରୁ ଅଲଗା ଲିଫ୍‌ଟ ଲାଗିଛି ୮୬ ତାଲାକୁ ଯିବା ପାଇଁ । ୮୬ ତାଲାରୁ ଚାରିଆଡ଼କୁ ଅନାଇବା ପାଇଁ ଗୋଟିଏ ପର୍ଯ୍ୟବେକ୍ଷଣାଗାର ଅଛି । ସେଠାରୁ ୧୦୨ ତାଲାକୁ ଯିବା ପାଇଁ ଆଉ ଏକ ଲିଫ୍‌ଟ ଲାଗିଛି । ୧୦୨ ତାଲା ଉପରେ ଆଉ ଏକ ପର୍ଯ୍ୟବେକ୍ଷଣାଗାର । ଏହା ଉପରେ ୨୨୨ ଫୁଟ ଉଚ୍ଚ ଏକ ଟେଲିଭିଜନ୍ ଟାୱାର ବସିଛି । ଏହିଠାରୁ ଆମେରିକାର ସାତଗୋଟି ଟେଲିଭିଜନ କୋମ୍ପାନୀ ସେମାନଙ୍କ ପ୍ରୋଗ୍ରାମ ପ୍ରେରଣ କରନ୍ତି । ଏହାର ୯୦ ତାଲାରେ ଚାରୋଟି ବିରାଟ ବିରାଟ ଆଲୋକ-ବତି ବସିଛି । ଏହାକୁ କହନ୍ତି ଫ୍ରିଡ଼ମ୍ ଲାଇଟ୍ ବା ସ୍ୱାଧୀନତା ଆଲୋକ । ଏହା ରାତିରେ ସମୁଦ୍ରରେ ନିଉୟର୍କଠାରୁ ୮୦ ମାଇଲ ଦୂର ପର୍ଯ୍ୟନ୍ତ ଦିଶେ । ତେଣୁ ସମୁଦ୍ରରେ ଆସୁଥିବା ଜାହାଜ ଅନ୍ଧକାର ରାତ୍ରିରେ ଏହି ଆଲୋକକୁ ଦେଖି ନିଉୟର୍କ ବନ୍ଦର କଥା ଜାଣିପାରନ୍ତି । ସେଥିପାଇଁ ଏହା ହେଉଛି ସାରା ପୃଥିବୀରେ ଉଚ୍ଚତମ ବତିଘର ।

ଲିଫ୍‌ଟ ବ୍ୟତୀତ ଏହି ପ୍ରାସାଦରେ ୧୮୬୦ଟି ପାହାଚ ଅଛି । ଏହାକୁ ସଫା କରିବା ପାଇଁ ୨୦୦ ମହିଳା ନିଯୁକ୍ତ ଅଛନ୍ତି । ଏହି ପ୍ରାସାଦରେ ଦୈନିକ ୬୦୦୦ ଲୋକ ନାନା ଅଫିସରେ କାମ କରନ୍ତି । ପ୍ରତି ମାସରେ



ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ

ଏଠାରେ ୨୦୦୦,୦୦୦ କିଲୋଓ୍ୱାଟ୍ ଘଣ୍ଟା ବିଦ୍ୟୁତ୍‌ଶକ୍ତି ଖରଚ ହୁଏ । ଏଥିରେ ଯେତେକ ପାଣି-ପାଇପ୍ ଅଛି, ସେସବୁକୁ ଯୋଡ଼ି ଲମ୍ବାଇଦେଲେ ୬୦ ମାଇଲ ହେବ । ଏହି ପ୍ରାସାଦରେ ୬୦,୦୦୦ ଟନ୍ ଇସ୍ପାତ ଲାଗିଛି । ଏହି ପ୍ରାସାଦର ୬ଷ୍ଠ ତାଲା ପାଖରୁ ବାହାର ପାଖ ପର୍ଯ୍ୟନ୍ତ ଷ୍ଟେନ୍‌ଲେସ୍‌ଷ୍ଟିଲ୍ ଓ ଇଣ୍ଡିଆନା ଲାଇମ୍‌ଷ୍ଟୋନ୍ ଦ୍ୱାରା ଆଚ୍ଛାଦିତ । ଏଥିରେ ଏକକାଳୀନ ୮୦,୦୦୦ ଲୋକ ରହିପାରିଲା ଭଳି ବାସଗୃହ ଅଛି । ନିଉୟର୍କ ନଗରୀରେ ଯଦିଚ ଆଉ ଦୁଇଟି ପ୍ରାସାଦ ଅଧିକ ତାଲା ବିଶିଷ୍ଟ ହୋଇ ତିଆରି ହୋଇଛି, ତଥାପି ଏମ୍ପାୟାର ଷ୍ଟେଟ୍ ବିଲ୍‌ଡ଼ିଂର ଖ୍ୟାତି କମିନି । ସେ ଦୁଇଟି ଯାଆଁଳା ପ୍ରାସାଦ ଓ୍ୱାର୍ଲଡ଼୍ ଟ୍ରେଡ଼୍ ସେଣ୍ଟର ବିଲ୍‌ଡ଼ିଂ ଭାବରେ ଖ୍ୟାତ ଓ ପ୍ରତ୍ୟେକ ୧୧୦ ତାଲା ବିଶିଷ୍ଟ ଏବଂ ଉଚ୍ଚତା ୧୩୫୦ ଫୁଟ ଲେଖାଏଁ । ଏହି ଦୁଇଟି ପ୍ରାସାଦ ୧୯୭୭ରେ ତିଆରି ହେବା ଫଳରେ ଏମ୍ପାୟାର ଷ୍ଟେଟ୍ ବିଲ୍‌ଡ଼ିଂର ଖ୍ୟାତି ପରାହତ ହେଲା । ଅବଶ୍ୟ ନିଉୟର୍କର ଏହି ଦୁଇଟି ପ୍ରାସାଦ ପୃଥିବୀର ଉଚ୍ଚତମ ପ୍ରାସାଦର ଗୌରବ ଅଧିକ ଦିନ ରଖିପାରିଲାନି । ବର୍ତ୍ତମାନ ପୃଥିବୀର ଉଚ୍ଚତମ ପ୍ରାସାଦ ହେଉଛି ଚିକାଗୋରେ । ଏହା ସିୟର୍ସ କମ୍ପାନୀ ପ୍ରାସାଦ ଭାବରେ ପ୍ରସିଦ୍ଧ । ଏହା ୧୧୦ ତାଲା ବିଶିଷ୍ଟ ହେଲେ କ'ଣ ହେବ, ଏହାର ଉଚ୍ଚତା ଓ୍ୱାର୍ଲଡ଼୍ ଟ୍ରେଡ଼୍ ସେଣ୍ଟର ଅପେକ୍ଷା ଅଧିକ । ଓ୍ୱାର୍ଲଡ଼୍ ଟ୍ରେଡ଼୍ ସେଣ୍ଟରର ଉଚ୍ଚତା ୧୩୫୦ ଫୁଟ ହୋଇଥିବା ସ୍ଥଳେ ଏହାର ଉଚ୍ଚତା ହେଉଛି ୧୪୫୪ ଫୁଟ । ଏହାର ନିର୍ମାଣ ୧୯୭୦ରେ ଆରମ୍ଭ ହୋଇ ୧୯୭୭ରେ ସରିଲା । ଯେତେବେଳେ ଏହାର ୧୦୪ ତାଲା ତିଆରି ହେଲା, ଏହା ଓ୍ୱାର୍ଲଡ଼୍ ଟ୍ରେଡ଼୍ ସେଣ୍ଟର ଅପେକ୍ଷା ଅଧିକ ଉଚ୍ଚ ହୋଇଗଲା । ଏହାପରେ ପୁଣି ୬ତାଲା ଯୋଗ କରାଗଲା । ଏଥିରେ ୧୦୩ ଗୋଟି ଲିଫ୍‌ଟ ଲାଗିଛି । ଏଥିରେ ୧୬୭୦୦ ଲୋକ ବାସ କରନ୍ତି । ଏଥିରେ ୧୬୦୦୦ ଝରକା ରହିଛି । ଏଥିରେ ତଳୁ ୧୦୩ ତାଲା ପର୍ଯ୍ୟନ୍ତ ଯେଉଁ ଲିଫ୍‌ଟ ରହିଛି, ତାହା ପୃଥିବୀରେ ସବୁଠାରୁ ବେଗଶୀଳ ଲିଫ୍‌ଟ । ଏହା ୧୦୩ ତାଲା ପର୍ଯ୍ୟନ୍ତ ଯିବାକୁ ମୋଟେ ୪୫ ସେକେଣ୍ଡ ସମୟ ନିଏ । ଏହି ପ୍ରାସାଦର ତିଆରି ପାଇଁ ୨୦ କୋଟି ଡଲାର ଖର୍ଚ୍ଚ ହୋଇଛି ।

# ଷ୍ଟାଚ୍ୟୁ ଅଫ୍ ଲିବର୍ଟି

ଏହା ପୃଥିବୀର ବୃହତ୍ତମ ମୂର୍ତ୍ତି ଭାବରେ ଖ୍ୟାତ । ଏହା ବ୍ରୋଞ୍ଜରେ ତିଆରି । ଇସ୍ପାତର ଏକ ଫ୍ରେମ୍ ଉପରେ ବ୍ରୋଞ୍ଜର ଚାଦର ଦିଆଯାଇ ଏହି ମୂର୍ତ୍ତିଟି ତିଆରି କରାଯାଇଛି । ମୂର୍ତ୍ତିଟିର ଉଚ୍ଚତା ହେଉଛି ୧୫୧ ଫୁଟ । ଏହି ମୂର୍ତ୍ତିଟି ଏକ ନାରୀ ମୂର୍ତ୍ତି । ମୂର୍ତ୍ତିଟି ଡାହାଣ ହାତଟିକୁ ଉପରକୁ ଟେକି ସେ ହାତରେ ସ୍ୱାଧୀନତାର ମଶାଲ୍ ଧରିଛି ଓ ବାମ ହାତରେ ଖଣ୍ଡିଏ ବହି । ବହିଟି ନ୍ୟାୟର ଏକ ପୁସ୍ତକ । ଏହି ମୂର୍ତ୍ତିଟିର ନକ୍ସା ତିଆରି କରିଥିଲେ ବିଖ୍ୟାତ ମାର୍କିନ୍ ଆର୍କିଟେକ୍ଟ ଫ୍ରେଡ଼େରିକ୍ ବାର୍ଥୋଲଡ଼ି । ତାଙ୍କରି ନକ୍ସାକୁ ନେଇ ମୂର୍ତ୍ତିଟି ତିଆରି କରିଥିଲେ ସୁବିଖ୍ୟାତ ଫରାସୀ ଇଞ୍ଜିନିୟର ଆଲେକ୍‌ଜାଣ୍ଡର ଗୁଷ୍ଟଭ ଆଇଫେଲ୍, ଯେ କି ପାରିସର ସୁବିଖ୍ୟାତ ଆଇଫେଲ୍ ଟାୱାରର ସ୍ରଷ୍ଟା । ସେ ଜୀବନରେ ଏହି ଦୁଇଟି ଅପୂର୍ବ ଶ୍ରେଷ୍ଠକୃତି ପାଇଁ ଅମର ହୋଇପାରିଛନ୍ତି । ବଡ଼ ବିଚିତ୍ର, ଏହି ଦୁଇଟିଯାକ ଆଧୁନିକ ଯୁଗର ସପ୍ତାଶ୍ଚର୍ଯ୍ୟ ଭିତରୁ ଗୋଟିଏ ଗୋଟିଏ ।

ଏହି ମୂର୍ତ୍ତିଟି ତିଆରି ହୋଇଥିଲା ଫ୍ରାନ୍‌ସରେ । ଏହାର ସମସ୍ତ ଖର୍ଚ୍ଚ ଫ୍ରାନ୍‌ସ ଦେଶର ନାଗରିକମାନେ ନିଜ ନିଜ ମଧ୍ୟରେ ଚାନ୍ଦା କରି ବହନ କରିଥିଲେ । ଏହା ଥିଲା ଫରାସୀମାନଙ୍କର ମାର୍କିନ୍‌ମାନଙ୍କୁ ଉପହାର । ଏହି ମୂର୍ତ୍ତିଟି ଯେଉଁ ମୂଳ ଆସନ ଉପରେ ବସିଛି, ସେ ଆସନର ଉଚ୍ଚତା କିଛି କମ୍ ନୁହେଁ । ଏହା ୧୫୪ ଫୁଟ ଉଚ୍ଚ, ଯାହା ପନ୍ଦରତାଲା କୋଠାର ଉଚ୍ଚତା ସଙ୍ଗେ ପ୍ରାୟ ସମାନ । ଆସନ ଓ ମୂର୍ତ୍ତି ମିଶି ଏହାର ଉଚ୍ଚତା ଭୂମିଠାରୁ ୩୦୫ ଫୁଟ । ଏହାର ଆସନର ତିଆରି ଖର୍ଚ୍ଚ ଯୁକ୍ତରାଷ୍ଟ୍ରର ଲୋକେ ବହନ କରିଥିଲେ । ଏହା ନିଉୟର୍କର ଉପକୂଳରେ ଥିବା ଲିବର୍ଟି ଦ୍ୱୀପ ଉପରେ ଅବସ୍ଥିତ । ଏଠାକୁ ଯିବାକୁ ହେଲେ ମାନହଟନ ଦ୍ୱୀପରୁ ଏକ ଜାହାଜରେ ଯିବାକୁ ପଡ଼େ । ଏହି ମୂର୍ତ୍ତିର ପାଦତଳୁ ମସ୍ତକ ପର୍ଯ୍ୟନ୍ତ ଯିବାପାଇଁ ୧୬୧ ଗୋଟି ଇସ୍ପାତ ପାହାଚ ଅଛି । ଦର୍ଶକମାନେ ଏହି ପାହାଚ ଦେଇ ଏହାର ମସ୍ତକ ପର୍ଯ୍ୟନ୍ତ ଯାଇ ମସ୍ତକର ମୁକୁଟ ତଳେ ଥିବା ଝରକାରେ ଚାରିଆଡ଼କୁ ଅନାଇ ନିଉୟର୍କ ନଗରୀର



ଷ୍ଟାଚ୍ୟୁ ଅଫ୍ ଲିବର୍ଟି

ତଥା ଦ୍ୱୀପ ଓ ସମୁଦ୍ରର ଦୃଶ୍ୟ ଉପଭୋଗ କରନ୍ତି । ଏହି ମୂର୍ତ୍ତିଟି ତିଆରି କରିବା ପୂର୍ବରୁ ଆଇଫେଲ୍ ଏହି ମୂର୍ତ୍ତିଟି କିପରି ହେବ, ତହିଁର ଏକ ଛୋଟ ପ୍ରତିରୂପ ତିଆରି କରିଥିଲେ । ଏହି ମୂର୍ତ୍ତିଟି ପାରିସ୍‌ରେ ମନୁମେଣ୍ଟ୍ ଅଫ୍ ରିପବ୍ଲିକ୍ ନାମରେ ପାରିସ୍‌ର ଏକ ଛକ ଉପରେ ପ୍ରତିଷ୍ଠା କରାଯାଇଛି । ଏହା ଦେଖିବାକୁ ଅବିକଳ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଭଳି । ଯେ କେହି ଦେଖିଲେ କହିବ ଏହା ଷ୍ଟାଚ୍ୟୁ ଅଫ୍ ଲିବର୍ଟିର ସାନ ଭଉଣୀ । ଏହା ମଧ୍ୟ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଭଳି ଏକ ନାରୀ ମୂର୍ତ୍ତି । ଏହାର ଭିତର ପୋଲା । ଇସ୍ପାତର ଫ୍ରେମ୍ ଉପରେ ତମ୍ବା ଚାଦର ଦିଆଯାଇ ଏହି ମୂର୍ତ୍ତିଟି ତିଆରି କରାଯାଇଛି । ଆମେରିକାର ଷ୍ଟାଚ୍ୟୁ ଅଫ୍ ଲିବର୍ଟିକୁ ଦେଖିଲେ ଯେ କେହି ଲୋକ ଏହାର ବିରାଟତାରେ ସ୍ତବ୍ଧ ହୋଇ ଏହାକୁ ଆଧୁନିକ ଯୁଗର ସପ୍ତାଶ୍ଚର୍ଯ୍ୟ ବୋଲି ସ୍ୱୀକାର କରିବ ।

# ସେଟର୍ଣ୍ଣ ରକେଟ୍

ପୃଥିବୀର ସବୁଠାରୁ ଶକ୍ତିଶାଳୀ ରକେଟ୍ ଭାବରେ ସେଟର୍ଣ୍ଣ ରକେଟ୍ ଖ୍ୟାତ । ଏହି ରକେଟ୍ ଯୋଗୁ ହିଁ ଚନ୍ଦ୍ରପୃଷ୍ଠରେ ମଣିଷ ପହଞ୍ଚିବା ସମ୍ଭବ ହୋଇଥିଲା । ଏହି ମାର୍କିନ୍ ରକେଟ୍‌ର ସ୍ରଷ୍ଟା ହେଉଛନ୍ତି ଜର୍ମାନ୍ ରକେଟ୍-ବିଶାରଦ ଭନ ବ୍ରନ୍ । ଏହି ରକେଟ୍ ଆଟଲାସ୍ ରକେଟ୍ ଠାରୁ ୨୦ ଗୁଣ ଅଧିକ ଶକ୍ତିଶାଳୀ । ଏହା ମହାଶୂନ୍ୟକୁ ୭୫ ଲକ୍ଷ ପାଉଣ୍ଡର ଠେଲା (Thrust) ଦେଇପାରେ, ଯାହାକି ଅନ୍ୟ କୌଣସି ରକେଟ୍ ପକ୍ଷରେ ଅସମ୍ଭବ । ଏହି ରକେଟ୍‌ର ଉଚ୍ଚତା ୩୬୫ ଫୁଟ ଓ ଗୋଲେଇ ୩୧ ଫୁଟ । ଏହା ଉଚ୍ଚତାରେ ୩୦ ତାଲା କୋଠାର ଉଚ୍ଚତାକୁ ବଳିଯିବ । ପୃଥିବୀର ଉଚ୍ଚତମ ମୂର୍ତ୍ତି ଷ୍ଟାଚ୍ୟୁ ଅଫ୍ ଲିବର୍ଟିଠାରୁ ଏହା ୬୦ ଫୁଟ ଅଧିକ ଉଚ୍ଚ ଓ ଏହାଠାରୁ ୧୩ ଗୁଣ ଅଧିକ ଭାରୀ । ଏହି ରକେଟ୍‌ର ଓଜନ ୩୦୦୦ ଟନ୍ । ଏଥିରେ ଥିବା ଇନ୍ଧନର ଓଜନ ୨୮୦୦ ଟନ୍ ପାଖାପାଖି । ଏହି ରକେଟ୍ ଏହାର ୭୫ ଲକ୍ଷ ପାଉଣ୍ଡ ଠେଲା-ଶକ୍ତି ଆହରଣ ପାଇଁ ଏହା ୫୩୭୦୦୦ ଗ୍ୟାଲନ୍ ଇନ୍ଧନ ଦଗ୍ଧ କରିଥାଏ । ଏହି ଦହନ ପାଇଁ ଯେଉଁ ତରଳ ଅମ୍ଳଜାନ ଦରକାର ହୁଏ, ତାହା ୫୪ ଗୋଟି ରେଳଟାଙ୍କିକୁ ପୂରାଇ ପାରିବ । ଏହା କୌଣସି ଦୁର୍ଘଟଣା ଯୋଗୁଁ ଯଦି ବିସ୍ଫୋରିତ ହୁଏ, ତେବେ ଏହାର ବିସ୍ଫୋରଣ କ୍ଷମତା ୫୦ ଗୋଟି ପରମାଣୁ ବୋମାର ବିସ୍ଫୋରଣ କ୍ଷମତା ସହିତ ସମାନ ହେବ । ଏଥିରେ ଯେଉଁ ଇଞ୍ଜିନ୍ ଲାଗିଥାଏ, ସେଥିରୁ ଗୋଟିଏ ଗୋଟିଏ ଇଞ୍ଜିନ୍ ମିନିଟ୍‌କୁ ୯୦୦ ଟନ୍ ଇନ୍ଧନ ଦଗ୍ଧ କରିଥାଏ ।

ଆମେରିକାରେ ଯେଉଁଠି ସେଟର୍ଣ୍ଣ-୫ ରକେଟ୍‌ର ଯୋଡ଼ାଯୋଡ଼ି ହୁଏ, ତାହା ହେଉଛି ପୃଥିବୀର ବୃହତ୍ତମ କୋଠା । ଏଥିରେ ଥିବା ଘରଗୁଡ଼ିକ ଏତେ ଉଚ୍ଚ ଯେ, ଏହା ଭିତରେ ଜଳୀୟ ବାଷ୍ପ ଘନୀଭୂତ ହୋଇ ମେଘ ସୃଷ୍ଟି କରି ବର୍ଷା କରେ । ଏହି ବର୍ଷାରୁ ଯନ୍ତ୍ରପାତିଗୁଡ଼ିକୁ ରକ୍ଷା କରିବା ପାଇଁ ଏଥିରେ ନାନା ବନ୍ଦୋବସ୍ତ କରାଯାଇଛି ।



ସେଟର୍ଣ୍ଣ ରକେଟ୍

ଏହା ଏକ ତ୍ରିସ୍ତରୀୟ (Three stage) ରକେଟ୍ । ଏହାର ପ୍ରଥମ ସ୍ତରୀୟ ରକେଟ୍ ଖୁବ୍ ବିରାଟ । ଏହାର ଉଚ୍ଚତା ୧୩୦ ଫୁଟ ପାଖାପାଖି । ଦ୍ୱିତୀୟ ସ୍ତରୀୟ ରକେଟ୍‌ର ଉଚ୍ଚତା ୮୦ ଫୁଟ ପାଖାପାଖି ଓ ତୃତୀୟ ସ୍ତରୀୟ ରକେଟ୍‌ର ଉଚ୍ଚତା ୬୦ ଫୁଟ ପାଖାପାଖି । ପ୍ରଥମ ରକେଟ୍‌ରେ ପାଞ୍ଚଗୋଟି ଏଫ୍-୨ ଇଞ୍ଜିନ୍ ଲାଗିଛି । ଗୋଟିଏ ଗୋଟିଏ ଇଞ୍ଜିନ୍ ସେକେଣ୍ଡକୁ ହଜାରେ ଗେଲନ ଇନ୍ଧନ ଦହନ କରେ । ଏହି ପାଞ୍ଚଗୋଟି ଇଞ୍ଜିନ୍ ୩୦୦୦ ଟନ୍ ରକେଟ୍‌କୁ ଉପରକୁ ଉଠାଇ ନିଏ । ପ୍ରଥମ ପର୍ଯ୍ୟାୟରେ ଏହା ୨୭୦୦ ଟନ୍ ଇନ୍ଧନ ପ୍ରଥମ ୩ ମିନିଟ୍ ମଧ୍ୟରେ ଦହନ କରିଥାଏ । ଏହା ଯାନକୁ ମାତ୍ର ୩୦ ମାଇଲ ଉପରକୁ ଉଠାଇ ନିଏ । ଦ୍ୱିତୀୟ ପର୍ଯ୍ୟାୟ ସେଟର୍ଣ୍ଣ-୧ ରକେଟ୍ ଏହାକୁ ଆହୁରି ୭୬ ମାଇଲ ଉପରକୁ ଘେନିଯାଏ । ଏଥିରେ ପାଞ୍ଚଗୋଟି ଜେ-୧ ଇଞ୍ଜିନ୍ ଲାଗିଥାଏ । ଏଥିରେ ତରଳ ଉଦଜାନ ଓ ତରଳ ଅମ୍ଳଜାନ ଇନ୍ଧନ ବ୍ୟବହୃତ ହୁଏ । ତତ୍ପରେ ତୃତୀୟ ପର୍ଯ୍ୟାୟରେ ସେଟର୍ଣ୍ଣ-୪ ରକେଟ୍ ବିସ୍ଫୋରିତ ହୋଇ ମହାଶୂନ୍ୟ ଯାନକୁ ମହାଶୂନ୍ୟ ଭିତରକୁ ନେଇଯାଏ । ଏଥିରେ ପାଞ୍ଚଟି ଜେ-୨ ଇଞ୍ଜିନ୍ ଲାଗିଥାଏ । ଏହା ମହାକାଶ ଯାନକୁ ଘଣ୍ଟାକୁ ୧୮୦୦୦ ମାଇଲ ବେଗ ପ୍ରଦାନ କରେ । ଏଥିରେ ମଧ୍ୟ ତରଳ ଅମ୍ଳଜାନ ଓ ଉଦଜାନ ଇନ୍ଧନ ବ୍ୟବହୃତ ହୁଏ । ଏହି ରକେଟ୍‌ର ବିରାଟତା ଓ କରାଳ ରୂପ ଦେଖିଲେ ଯେ କେହି ଲୋକ ସ୍ତମ୍ଭୀଭୂତ ହୋଇଯିବ । ଏଥିରେ ଅଗ୍ନି ସଂଯୋଗ ହେଲେ ଏହା ଯେଉଁ ଶବ୍ଦ କରେ, ତାହା ପ୍ରଳୟର ପୂର୍ବାଭାସ ଭଳି ମନେହୁଏ । ଏହି ରକେଟ୍‌ର କାର୍ଯ୍ୟକାରିତା ଦେଖିଲେ ଯେ କେହି ଲୋକ ଏହାକୁ ଆଧୁନିକ ଯୁଗର **ସପ୍ତାଶ୍ଚର୍ଯ୍ୟ** ଭିତରୁ ଗୋଟିଏ ବୋଲି ନିଶ୍ଚୟ କହିବ ।

# କମ୍ପ୍ୟୁଟର

ଆଧୁନିକ ଯୁଗର ଅସଂଖ୍ୟ ପ୍ରକାର ଯନ୍ତ୍ର ଭିତରୁ ସବୁଠାରୁ ଜଟିଳତମ ଯନ୍ତ୍ର ହେଉଛି କମ୍ପ୍ୟୁଟର । ଏହା ପ୍ରଧାନତଃ ଏନାଲୋଗ ଓ ଡିଜିଟାଲ କମ୍ପ୍ୟୁଟର ଭାବରେ ସର୍ବସାଧାରଣଙ୍କ ବ୍ୟବହାରରେ ପ୍ରଚଳିତ । ସାଧାରଣ ଗଣନାଠାରୁ ଆରମ୍ଭ କରି ପୃଥିବୀର ଜଟିଳତମ ଗଣନାରେ ଏହାର କୃତିତ୍ୱ ଅପରିସୀମ । ଏହା ଏତେ କ୍ଷିପ୍ର ଭାବରେ ଗଣନା କରିପାରେ, ଯାହା ଆମର ଧାରଣା ବାହାରେ । ଗୋଟିଏ ଗୋଟିଏ କମ୍ପ୍ୟୁଟର ମିନିଟକରେ ଯେତେ ଗଣନା କରିପାରେ, ହଜାରେ ଲୋକଙ୍କୁ ସେତକ ଗଣନା କରିବାକୁ ବର୍ଷ ବର୍ଷ ଲାଗିଯିବ । ଦୁନିଆରେ ଯେତେ ଜଟିଳ ସ୍ଥାନ ଅଛି, ଯେଉଁଠାରେ ଗଣନା ଖୁବ୍ ଜଟିଳ ଓ ସମୟ-ସାପେକ୍ଷ, ସେଠି କମ୍ପ୍ୟୁଟରଟି ଥୋଇଦେଲେ ସୁରୁଖୁରୁରେ ସବୁ ଗଣନା ନିର୍ଭୁଲ ଭାବରେ ହୋଇଯିବ । ସମସ୍ତେ ଜାଣନ୍ତି ମହାକାଶ ଅଭିଯାନ, ଚନ୍ଦ୍ର ଅଭିଯାନରେ ଅତି ଜଟିଳ ଗଣନା ହଜାର ହଜାର ସଂଖ୍ୟାରେ ଅତି ଅଳ୍ପ ସମୟ ମଧ୍ୟରେ ହେବା ଦରକାର । ମଣିଷ ପକ୍ଷରେ ଏତେ ଗଣନା ଏତେ କମ୍ ସମୟ ମଧ୍ୟରେ କରିବା ଅସମ୍ଭବ । ସେଠି କମ୍ପ୍ୟୁଟର ସେସବୁ ଗଣନା ନିମିଷକ ମଧ୍ୟରେ କରି ଦେଇ ମହାକାଶ ବା ଚନ୍ଦ୍ର ଅଭିମୁଖେ ଯାତ୍ରୀମାନଙ୍କୁ ପଠାଇପାରୁଛି । ଆଜି ଯଦି କମ୍ପ୍ୟୁଟର ଉଦ୍ଭାବିତ ହୋଇ ନ ଥାନ୍ତା, ତେବେ ଚନ୍ଦ୍ରଲୋକକୁ ଯିବା ଅସମ୍ଭବ ହୋଇଥାନ୍ତା ।

ଦେଶର ପାଣିପାଗ ଭବିଷ୍ୟତବାଣୀ କରିବାରେ କମ୍ପ୍ୟୁଟରର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଏଥିରେ ମଧ୍ୟ ନାନାଦି ଜଟିଳ ଗଣନା କରି ଭବିଷ୍ୟତବାଣୀ କରାଯାଏ । ଉପଗ୍ରହ ଜରିଆରେ ମହାକାଶରେ ଥାଇ ପାଣିପାଗ ସମ୍ବନ୍ଧୀୟ ନାନା ତଥ୍ୟ ଗ୍ରହଣ କରାଯାଏ । ସେହି ତଥ୍ୟାବଳୀକୁ ନେଇ କମ୍ପ୍ୟୁଟର ସାହାଯ୍ୟରେ ଗଣନା କରି କେଉଁଦିନ କି ପାଗ ହେବ, ବର୍ଷା ଝଡ଼ କେବେ ହେବ, କେଉଁ କେଉଁ ସ୍ଥାନକୁ ବ୍ୟାପିବ ଆଦି ନାନା କଥା ପୃଥିବୀର ଲୋକଙ୍କୁ ଜଣାଇ ଦିଆଯାଏ । ଏଥିପାଇଁ ସାଧାରଣ କମ୍ପ୍ୟୁଟର ଅପେକ୍ଷା ସୁପର କମ୍ପ୍ୟୁଟର ଭଲ କାମ ଦିଏ ।

ଏତଦ୍‌ବ୍ୟତୀତ କମ୍ପ୍ୟୁଟର ସାହାଯ୍ୟରେ ଶରୀରସ୍ଥ ଅଭ୍ୟନ୍ତରସ୍ଥ ବହୁ ରୋଗ ସମ୍ବନ୍ଧରେ ନାନା ତଥ୍ୟ ଓ ଅବସ୍ଥା ଜଣାଇ ଦିଆଯାଏ ।

କମ୍ପ୍ୟୁଟର ଆଜିକାଲି ପିଲାମାନଙ୍କୁ କ୍ଲାସ୍‌ରେ ପାଠ ପଢ଼ାଇ ପାରୁଛି, ପରୀକ୍ଷା ଖାତା ଦେଖି ମୂଲ୍ୟାଙ୍କନ କରିପାରୁଛି, କଳ କାରଖାନା, ଖଣି ଆଦିର କାର୍ଯ୍ୟପଦ୍ଧତି ଉପରେ ନଜର ରଖି କେଉଁଠି କ'ଣ ଅସୁବିଧା ହେଲା, ଜଣାଇଦେଇ ପାରୁଛି । ଅଫିସ, ଦପ୍ତର, ବ୍ୟାଙ୍କ୍ ଆଦିରେ ନାନା ରେକର୍ଡ଼ ସଂରକ୍ଷଣ ସଙ୍ଗେ ସଙ୍ଗେ ଦେଣନେଣର ନାନା ହିସାବକିତାବ କରିପାରୁଛି ।

ଏହା କବିଙ୍କ ଭଳି କବିତା ରଚନା କରିପାରୁଛି । ସଙ୍ଗୀତଜ୍ଞଙ୍କ ଭଳି ନାନା ପ୍ରକାର ସଙ୍ଗୀତର ସ୍ୱର ଦେଇପାରୁଛି । କଳାକାର ଭଳି ନାନା ଚିତ୍ର ଆଙ୍କିପାରୁଛି ।

ପୁଅ ଝିଅଙ୍କ ଭିତରୁ ଉପଯୁକ୍ତ ବରକନ୍ୟା ବାଛି ସେମାନଙ୍କ ବିବାହ କରାଇପାରୁଛି, ଯାହା ଫଳରେ ନବ ବିବାହିତାମାନେ ସୁଖରେ ଘରସଂସାର କରି ପାରୁଛନ୍ତି । ଏହା ଚୋର ଡକାୟତମାନଙ୍କୁ ଠାବ କରିବା ତଥା ଧରିବାରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିପାରୁଛି । ଏହା ଅଫିସ, ଦପ୍ତରର ଏତେ ତଥ୍ୟକୁ ସାଇତି ରଖିପାରୁଛି ଓ ଦରକାର ବେଳେ ଏମିତି ଭାବରେ କାଢ଼ି ଦେଉଛି ଯେ, କମ୍ପ୍ୟୁଟରର କାର୍ଯ୍ୟ ଦେଖିଲେ ଯେକୌଣସି ଲୋକ ଆଶ୍ଚର୍ଯ୍ୟ ନ ହୋଇ ରହିପାରିବନି ।

ଏହା ଡାକ୍ତରମାନଙ୍କ ଭଳି ରୋଗ ଚିହ୍ନି ଉପଯୁକ୍ତ ଔଷଧ ଓ ପଥ୍ୟ ବତାଇ ଦେଇ ପାରୁଛି । ମଟରଗାଡ଼ି ମରାମତି କାରଖାନାଠାରୁ ଆରମ୍ଭ କରି ଉଡ଼ାଜାହାଜ କାରଖାନା ପର୍ଯ୍ୟନ୍ତ ସବୁଆଡ଼େ ସେସବୁକୁ ପରୀକ୍ଷା କରି କାହାର କି ଅସୁବିଧା ହୋଇଛି, ବତାଇ ଦେଇ ପାରୁଛି । ଏମିତି ଭାବରେ କମ୍ପ୍ୟୁଟର କଥା ବଖାଣିବସିଲେ କେତେଖଣ୍ଡ ବଡ଼ ବଡ଼ ବହି ହେବ । ସେଥିପାଇଁ ଯଥାର୍ଥରେ କୁହାଯାଇଛି, ଏହା ହେଉଛି ଆଧୁନିକ ଯୁଗର ସପ୍ତାଶ୍ଚର୍ଯ୍ୟ ଭିତରୁ ଗୋଟିଏ । କମ୍ପ୍ୟୁଟରର କାର୍ଯ୍ୟପ୍ରଣାଳୀ ଓ କାର୍ଯ୍ୟଦକ୍ଷତା ଦେଖିଲେ ଏହାକୁ ସପ୍ତାଶ୍ଚର୍ଯ୍ୟ ଭିତରୁ ଗୋଟିଏ ବୋଲି ନ କହି ରହିହେବନି ।

---